# ବଣ ଡ଼ଙ୍ଗରର ଗପ

## କୋରାପୁଟିଆ ଆଦିବାସୀ ଲୋକକଥା

ଲେଖକ: ରଞ୍ଜନ ପ୍ରଧାନ, ପ୍ରକାଶିକା: ପ୍ରଜ୍ଞା ପରିମିତା, ନିଗିନିପୁର, ସାନଜରିଆ, କେନ୍ଦ୍ରାପଡ଼ା, ପ୍ରଚ୍ଛଦ: ପ୍ରକାଶ ମହାପାତ୍ର, ଭିତର ଚିତ୍ର: ପର୍ଶୁରାମ ସାହୁ, ମୁଦ୍ରଣ: ଜନସେବା ପ୍ରେସ୍, ନବରଙ୍ଗପୁର, ମୂଲ୍ୟ: **୭୫** ଟଙ୍କା/-

**ପ୍ରଥମ ସଂସ୍କରଣ : ୨୦୦୭**

**BAP D G GAP**

ପୁ ଙ୍ଗ େ e

ଦ ସେ ।

# ଲୋକଗପ ଅର୍ଦ୍ଧଶତକ

ଅବିଭକ୍ତ କୋରାପୁଟ ଜିଲ୍ଲା (ନବରଙ୍ଗପୁର, କୋରାପୁଟ, ରାୟଗଡା, ମାଲ୍‌କାନ୍‌ଗିରି)ର ଆଦିବାସୀ ଲୋକ କଥାକୁ ନେଇ ଏକ ସବିଶେଷ ଦଲିଲ୍। ଏଥିରେ ଅଛି ଅର୍ଦ୍ଧଶତକଟି ଲୋକ ଗପ।

**(ପ୍ରିୟ ଆଈ) ଶୁକ ବୁଢ଼ୀକୁ...**

ଯାହା ପାଖରେ ଥିଲା ଶହଶହ ଅସରନ୍ତି ଗପ ମୋତେ ଶୁଆଇବା ପାଇଁ
ଯାହାର କୋଳ ଥିଲା ମୋର ସମସ୍ତ ସୁଖ ନିଦ୍ରାର ସ୍ୱପ୍ନ ବୋଳା ଫୁଲ ଶେଯ
ଯିଏ ମୋତେ ବାଣ୍ଟୁଥିଲା ଏତେଏତେ ନିଃସର୍ତ୍ତ ଓ ନିର୍ଭେଜାଲ୍ ଭଲ ପାଇବା



ଓ ବିଷୟବସ୍ତୁ ଯେପରି ରହସ୍ୟମୟ ସେହିପରି ରସଘନ ମଧ୍ୟ। ଏସବୁକୁ ସହସ୍ରବାର ଶୁଣିବା ପରେ ବି ପ୍ରତିଥର ନୂଆ ନୂଆ ଲାଗେ। ରବୀନ୍ଦ୍ର ନାଥ ଠାକୁରଙ୍କ ଗଳ୍ପ ସମ୍ପର୍କୀୟ ଶେଷୋକ୍ତି 'ଶେଷ ହଏ, ହଏଲାନା ଶେଷ' ଲୋକ ଗପ ପାଇଁ ବେଶ୍ ପ୍ରଯୁଜ୍ୟ।

ଗପ କହିବା ଏବଂ ଶୁଣିବା ମାନବର ସହଜାତ ପ୍ରବୃତ୍ତି। ବାଲ୍ୟକାଳରୁ ବାର୍ଦ୍ଧକ୍ୟ ଯାଏ ସବୁ ସମୟରେ ଏଥିପ୍ରତି ମାନବର ଭାଷାତୁର ମନ ଓ ଦରଦୀ ହୃଦୟ ଉନ୍ମୁକ୍ତ ଥାଏ। ସ୍ମରଣାତୀତ କାଳରୁ ପଞ୍ଚତନ୍ତ୍ର, ହିତୋପଦେଶ, ଦଶ କୁମାର ଚରିତ ଏବଂ ବିଭିନ୍ନ ପୁରାଣର ଅଜସ୍ର କାହାଣୀ ଜନସମାଜରେ ପ୍ରଚାରିତ ଓ ଆଦୃତ ହୋଇ ଆସିଛି। ସମଗ୍ର ବିଶ୍ୱରେ ବିଭିନ୍ନ ଦେଶର ଲୋକ ଗପର ପ୍ରବହମାନ ଧାରାରେ ବହୁ ସାମଞ୍ଜସ୍ୟ ରହିଛି। ଆଫ୍ରିକା, ଇଣ୍ଡୋନେସିଆ, ୟୁରୋପ, ଆମେରିକା ଓ ଭାରତବର୍ଷର ପ୍ରଚଳିତ ଲୋକ ଗପର ବିଷୟବସ୍ତୁ ଗଠନ ରୀତିରେ ବହୁ ସମାନତା ପରିଦୃଷ୍ଟ ହୁଏ। ଲୋକ ଗପର କଥନ ଭଙ୍ଗୀରେ ହିଁ ଥାଏ ଯଥାର୍ଥ ମାଧୁର୍ଯ୍ୟ। ଗଳ୍ପସାଗର ଓ ପ୍ରଚୀନ କଥାକାରମାନଙ୍କର ଏହି ଅନନ୍ୟ ଦକ୍ଷତା ହିଁ ଶ୍ରୋତାଗଣଙ୍କୁ ସମ୍ମୋହିତ କରି ରଖି ପାରୁଥିଲା।

"A study of Odisha Folklore" ପୁସ୍ତକରେ ଡଃ. କୁଞ୍ଜ ବିହାରୀ ଦାଶ ଏ ସମ୍ପର୍କରେ ବିଶଦଭାବେ ଆଲୋଚନା କରିଛନ୍ତି।

Folk Tales of Odisha may be broadly divided into five classes

1. Tales of kings who are stupid, whimsical & despotic
2. Tales of adventure by the sons of kings & ministers, merchants
3. Tales of giants, witches, ghosts & demigods
4. Tales of birds, beasts, snakes, flying horses, magic boats, magic jewels & fishes
5. Tales of sea, voyage reminding us of the golden age when Odisha had an over-sea empire & trade with Chins, Indonesia, Combodia, South-Africa & Cylon.

ଲୋକଗପର ଆଙ୍ଗିକ ଗଠନ ରୀତି ଓ ଆତ୍ମିକ ଆବେଦନ ଶିଷ୍ଟ କଥା ସାହିତ୍ୟଠାରୁ କୌଣସି ଗୁଣରେ କମ୍ ନୁହେଁ। ଅବିଭକ୍ତ କୋରାପୁଟ ଜିଲ୍ଲାର ଆଦିବାସୀ ଲୋକ ଗପଗୁଡ଼ିକରେ ରାଜା, ମନ୍ତ୍ରୀ, କଟୁଆଳ, ପଶୁ, ପକ୍ଷୀ, ପ୍ରକୃତି, ପରୀ, ଯକ୍ଷ, ଗନ୍ଧର୍ବ, ବୁଢି ଅସୁରୁଣୀ, ତଥା ପୌରାଣିକ ଚରିତ୍ର ଆଦି ଦେଖିବାକୁ ମିଳେ। ରାଜନୈତିକ ସୁବିଧା ପାଇଁ ଜିଲ୍ଲାକୁ ନବରଙ୍ଗପୁର, କୋରାପୁଟ, ରାୟଗଡା ଓ ମାଲକାନଗିରି ଆଦି ଚାରୋଟି ରାଜସ୍ୱ ଜିଲ୍ଲାର ସ୍ୱତନ୍ତ୍ରତା ମିଳି

ପାରିଥିଲେ ବି ସାଂସ୍କୃତିକ ସଙ୍ଗତି ଓ ସମନ୍ୱୟ ଏଠି ସ୍ପଷ୍ଟ ପରିଦୃଷ୍ଟ ହୁଏ।

ଆମ ସମୟର ଯଶସ୍ୱୀ କଥା ଶିଳ୍ପୀ ରଞ୍ଜନ ପ୍ରଧାନ ଏ ଜିଲ୍ଲାରେ ସାମ୍ବାଦିକ ଭାବେ ଯୋଗ ଦେଲାପରେ ଏ ମାଟିର ବିଭବରେ ବିମୁଗ୍ଧ ହୋଇ ଆଦିବାସୀ ପଲ୍ଲୀରୁ ନିଘଞ୍ଚ ଗିରିଗୁହା ଯାଏ ଘୁରିବୁଲିଛନ୍ତି ଲୁକ୍କାୟିତ ବିଭବର ସନ୍ଧାନ ଓ ପୁନରୁଦ୍ଧାର ପାଇଁ। ପ୍ରଥମ ପର୍ଯ୍ୟାୟରେ ଜିଲ୍ଲାର ସଂସ୍କୃତି ଓ ପର୍ଯ୍ୟଟନର ବିଭିନ୍ନ ଦିଗକୁ ନେଇ ଏକ ଗବେଷଣାତ୍ମକ, ତଥ୍ୟ ଭିତ୍ତିକ ପୁସ୍ତକ ଜିଲ୍ଲାବାସୀଙ୍କୁ ଭେଟି ଦେଇଥିଲେ। ସେତିକିରେ ସେ ନିରବି ଯାଇ ନାହାନ୍ତି। ଅବିଭକ୍ତ କୋରାପୁଟ ଜିଲ୍ଲାର ବିଶାଳ ଲୋକ ସାହିତ୍ୟର ଲଳିତ ବିଭବ ରାଶିରାଶି ଲୋକଗପର ସନ୍ଧାନରେ ସେ ଘୁରି ବୁଲିଲେ। ଆଧୁନିକ ଗଣମାଧ୍ୟମ ଓ ମନୋରଞ୍ଜନର ନିର୍ମମ ତାଡନାରେ କ୍ରମଶଃ ଲୁପ୍ତ ହେବାକୁ ଯାଉଥିବା ଲୋକଗପର ସଂଗ୍ରହ କାମ ନିଶ୍ଚିତ ଭାବେ ଏକ ଦୁରୁହବ୍ୟାପାର। ଅବିଭକ୍ତ କୋରାପୁଟ ଭୂ-ଖଣ୍ଡର ଆଦିବାସୀ ବୃଦ୍ଧ ଏବଂ ବୃଦ୍ଧାଙ୍କ ସ୍ମୃତିକୋଷରୁ ଗପଗୁଡ଼ିକୁ ସାଉଁଟିବା ପାଇଁ ସେ ବର୍ଷବର୍ଷ ଧରି ସମୟ କଟେଇ ଦେଇଛନ୍ତି ଏବଂ ସଫଳ ହୋଇଛନ୍ତି ମଧ୍ୟ।

ରଞ୍ଜନ ପ୍ରଧାନଙ୍କ ବିଶେଷତ୍ୱ ହେଉଛି ତାଙ୍କର ସ୍ୱତନ୍ତ୍ର ଭାଷାଗତ ବର୍ଣ୍ଣନା ଚାତୁରୀ। ସେ ମୂଳତଃ ଜଣେ ଗାଳ୍ପିକ ଏବଂ ତାଙ୍କର ଯାଦୁକରୀ ଶବ୍ଦ ଓ ଭାଷା ପ୍ରୟୋଗରେ ଏହି ଲୋକଗପଗୁଡ଼ିକ ନିଶ୍ଚିତ ଭାବେ ଓଡ଼ିଶାର ପାଠକଙ୍କୁ ଆକର୍ଷିତ କରିବ; ଏଥିରେ ସନ୍ଦେହ ନାହିଁ। ଶ୍ରୀ ପ୍ରଧାନ ନିଜେ ଜଣେ ପୋଖତ ଗାଳ୍ପିକ ହୋଇଥିବାରୁ ଅନେକତ୍ର ଗପଗୁଡ଼ିକୁ ନୂତନ ପୁଟ ଦେଇ ସର୍ବପଠନୀୟ କରିପାରିଛନ୍ତି। ଫଳରେ ସବୁ ବର୍ଗର ଭାବଗ୍ରାହୀ ମଣିଷଙ୍କ ପାଇଁ ଗଳ୍ପଗୁଡ଼ିକ ମନମୁଗ୍ଧକର ହୋଇଛି। ଲୋକଗପ ସଂଗ୍ରହର ପରମ୍ପରା ଓ ପଦ୍ଧତିକୁ ସେ ସତର୍କତାର ସହ ପାଳନ କରିଛନ୍ତି। ଏହା ବ୍ୟତୀତ ଗପଗୁଡ଼ିକରେ ମୌଳିକତା ରକ୍ଷା କରିବା ଦିଗରେ ସେ ସର୍ବାଧିକ ଯତ୍ନବାନ୍ ହୋଇଛନ୍ତି। ରଞ୍ଜନବାବୁଙ୍କ ପୂର୍ବରୁ ରଘୁନାଥ ମହାପାତ୍ର, କୋରାପୁଟ ଜିଲ୍ଲାର ଅଶୋକ ମିଶ୍ର, ନରେନ୍ଦ୍ର ନାଥ ପଟ୍ଟନାୟକ କିଛି କିଛି ଆଦିବାସୀ ଲୋକଗପର ସଂଗ୍ରହ କରିଛନ୍ତି। ତେବେ ଅବିଭକ୍ତ କୋରାପୁଟର ଆଦିବାସୀ ଜନଜୀବନର ଗପକୁ ନେଇ ଏହା ଏକ ସାଂଘାତିକ୍ ଦସ୍ତାବିଜ୍। ଅତି ନିଖୁଣ କାମ ଏଥିରେ ସନ୍ଦେହ ନାହିଁ।

ଅବିଭକ୍ତ କୋରାପୁଟ ଭୂ-ଖଣ୍ଡର ଲୋକ ଗପ ସଂଗ୍ରହରେ ଶ୍ରୀ ପ୍ରଧାନ ଯେଉଁ ବିଶେଷ କାମ କରିଛନ୍ତି ତାହା ପରବର୍ତ୍ତୀ ଗବେଷକ ଓ ସଂଗ୍ରାହକମାନଙ୍କ ପାଇଁ ସହାୟକ ହେବ, ଏଥିରେ ସନ୍ଦେହ ନାହିଁ। ପ୍ରଖ୍ୟାତ କଥାଶିଳ୍ପୀ ମନୋଜ ଦାସଙ୍କ 'ଅମୃତଫଳ' ପୁସ୍ତକର ପରିବେଷଣ ଶୈଳୀପରି 'ବଣ ଡ଼ଙ୍ଗରର ଗପ' ପୁସ୍ତକର ପ୍ରତିଟି ଗଳ୍ପ ଆଧୁନିକତାର ଉଗ୍ର ପରିବେଶରେ ବି ମଣିଷର ଅନ୍ତରକୁ ଛୁଇଁ ପାରିଛି। ଏହା ହିଁ ତାଙ୍କ ପରିଶ୍ରମର ଫଳ।

ରଞ୍ଜନ ପ୍ରଧାନ ଜଣେ ସାମ୍ବାଦିକ, ଜଣେ ସାଂଘାତିକ୍ କଥାକାର ଓ ବିଦଗ୍ଧ କବି ଏବଂ ଗବେଷଣାରେ ମଗ୍ନ ଜଣେ ସାଧାରଣ ବ୍ୟକ୍ତିସତ୍ତା। ସାହିତ୍ୟ, ସାମ୍ବାଦିକତା ଓ ଗବେଷଣାର

ଅପୂର୍ବ ସମନ୍ୱୟ ପରିଲକ୍ଷିତ ହୁଏ ତାଙ୍କ କ୍ଷେତ୍ରରେ। ଏହି ଗୁଢ ତତ୍ତ୍ୱ ହିଁ ରଞ୍ଜନ ପ୍ରଧାନଙ୍କୁ ନିୟମିତ ସଫଳତା ଦେଇ ଚାଲିଛି। ସେ ଯେଉଁ କାମରେ ହାତ ଦେଇଛନ୍ତି, ଶତ ପ୍ରତିଶତ ସଫଳତା ଅର୍ଜନ କରିଛନ୍ତି, ଏହା ନିଃସନ୍ଦେହ। ତାଙ୍କ ଲେଖନୀର ଅମୃତମୟ ସ୍ପର୍ଶରେ ଜିଲ୍ଲାର ବନ୍ଧୁ ବିଭବ ଲୋକଲୋଚନକୁ ଆସିପାରିଛି। ନବରଙ୍ଗପୁର ଭଳି ଏକ ଦୁର୍ଗମ ଆଦିବାସୀବହୁଳ ଜିଲ୍ଲାରେ ସାମ୍ବାଦିକଟିଏର ପ୍ରକୃତ ଦାୟିତ୍ୱ କ'ଣ ତାହା ସେ ସମସ୍ତଙ୍କୁ ଦେଖେଇ ଦେଇଛନ୍ତି। ଗ୍ରାମୀଣ ସାମ୍ବାଦିକତା ଓ ଆଦିବାସୀ ଜନଜୀବନକୁ ନେଇ ତାଙ୍କର ପରୀକ୍ଷା ନିରୀକ୍ଷାର ବି ଅନ୍ତ ନାହିଁ। ଏହି ଉଭୟ କ୍ଷେତ୍ରରେ ସେ ଏକ ବୈପ୍ଲବିକ ପରିବର୍ତ୍ତନ ଆଣି ପାରିଛନ୍ତି।

ଜନସାଧାରଣଙ୍କ ଶ୍ରଦ୍ଧା, ସଦିଚ୍ଛା ଓ ଭଲ ପାଇବାର ଭାବକୁ ନେଇ ସେ ବାଣୀ ସାଧନାରେ ମଗ୍ନ। ତାଙ୍କ ଯାତ୍ରା ପଥରେ ଅସୁମାରୀ ସ୍ୱପ୍ନ, ଅଜସ୍ର ଆହ୍ୱାନ ତାଙ୍କୁ ମୁଗ୍ଧ କରିଛି। କିଛି ନୂତନ ସୃଷ୍ଟି ଭେଟି ଦେବା ପାଇଁ ପ୍ରରୋଚିତ କରିଛି।

ସମ୍ପ୍ରତି ଲୋକ ସାହିତ୍ୟକୁ ନେଇ ବିଶ୍ୱରେ ଯେଉଁ ଗବେଷଣା, ପରୀକ୍ଷା ନିରୀକ୍ଷା ଚାଲିଛି, ସେହି ତୁଳନାରେ ଆମ ଏ ଅଞ୍ଚଳ ବି ପଛରେ ପଡି ଯାଇନାହିଁ। ଆଜି 'ଡିଜ୍‌ନି ଲ୍ୟାଣ୍ଡ'ରୁ କାର୍ଟୁନ୍ ଶୋ'ଠାରୁ ଆମ ଦୂରଦର୍ଶନରେ ପ୍ରସାରିତ ପଞ୍ଚତନ୍ତ୍ର କାହାଣୀମାଳାର ପ୍ରସାର ଓ ଆଦର ଦେଖିଲେ ଲୋକ ସାହିତ୍ୟର ଭବିଷ୍ୟତ ନିରାଶାଜନକ ନୁହେଁ ବୋଲି ସ୍ପଷ୍ଟ।

କୋରାପୁଟ ଭୂ-ଖଣ୍ଡର ଲୋକ ଗପକୁ ନେଇ ରଞ୍ଜନ ପ୍ରଧାନ ଯେଉଁ କାମଟି କରିଛନ୍ତି ତାହା ଗବେଷକ ଓ ସଂଗ୍ରାହକମାନଙ୍କ ପାଇଁ ଏକ ଅମୂଲ୍ୟ ଗ୍ରନ୍ଥ ହୋଇ ରହିବ ଏଥିରେ ଦ୍ୱିମତ ନାହିଁ। ଓଡ଼ିଆ ଲୋକ ସାହିତ୍ୟକୁ ତାଙ୍କର ଅବଦାନ ଭୁଲିହେବନି। ତେବେ ଓଡ଼ିଆ ଲୋକ ସାହିତ୍ୟ ଭଣ୍ଡାରକୁ ସେ ଅଧିକରୁ ଅଧିକ ସମୃଦ୍ଧ କରନ୍ତୁ ଏହା ସ୍ରଷ୍ଟାଙ୍କ ପାଇଁ କାମନା।

**ପ୍ରଦୀପ କୁମାର ମିଶ୍ର**
**ନିର୍ବାଣ ସାହିତ୍ୟ ପରିଷଦ, ଜୟପୁର**

# ଖୋଲା କଥା...

ମୁଁ ଏବେ ଏଇ ଯେଉଁ କାର୍ଯ୍ୟଟି ସମ୍ପୂର୍ଣ୍ଣ କରିବାକୁ ଯାଉଛି, ତାହା କରି ନଥିଲେ କାହାର କ'ଣ କ୍ଷତି ହୋଇଥାନ୍ତା କିମ୍ବା କରି ଦେଲାପରେ କାହାର କିଛି ଲାଭ ହୋଇଯିବ ତାହା ଭିନ୍ନ କଥା । ଏହି ବହିଟି ପ୍ରକାଶ ପାଇବା ପରେ ଆଦିବାସୀ ସାହିତ୍ୟ ଓ ସଂସ୍କୃତି କେତେ ସମୃଦ୍ଧ ହୋଇ ପାରିବ ତାହା ମଧ୍ୟ ଭିନ୍ନ କଥା ।

ତେବେ ଏହି ବହିଟି ପ୍ରକାଶ ପାଇବା ଦ୍ୱାରା ଆଦିବାସୀମାନେ କ'ଣ ରାତାରାତି ସଭ୍ୟ ଓ ସାକ୍ଷର ହୋଇଯିବେ କିମ୍ବା ସେମାନେ ଆଉ ବଣ ଜଙ୍ଗଲରେ ନ ରହି ସହରରେ ବାସ କରିବେ କିମ୍ବା ଦଲାଲ୍‌ମାନଙ୍କ ଶୋଷଣରୁ ରକ୍ଷା ପାଇଯିବେ କିମ୍ବା ମଦ ପିଇବା ଛାଡି ଦେବେ କିମ୍ବା ସେମାନଙ୍କ ପିଲାମାନେ ପାଠ ପଢି ବିଭିନ୍ନ ପ୍ରତିଯୋଗିତାମୂଳକ ପରୀକ୍ଷାରେ ସଫଳ ହେବେ? ଯଦି ଏହି କାମ ଦ୍ୱାରା ଆଦିବାସୀମାନଙ୍କର ଜୀବନ ଧାରଣରେ ସାମାନ୍ୟ ଉନ୍ନତି ହୋଇପାରେ ତେବେ ମୁଁ ଭାବିବି ଏହି ଶ୍ରମ କିଛି ମାତ୍ରାରେ ସାର୍ଥକ ହୋଇଛି । କିନ୍ତୁ ସେମାନଙ୍କର କ'ଣ ରାତାରାତି ଏମିତି ପରିବର୍ତ୍ତନ ସମ୍ଭବ? କେବେ ବି ନୁହେଁ । ତେବେ ଏହି ବହିଟି କାହା ପାଇଁ ଛପାଯିବ?

ଯଦି କେହି ଜଣେ ଆଦିବାସୀ ପିଲା ଏହି ବହିଟିରୁ ସବୁତକ ଗପ ପଢିବାର ସୁଯୋଗ ଲାଭ କରେ, ତେବେ ମୁଁ ଜାଣିବି ମୋତେ ମୋ ପରିଶ୍ରମର ଫଳ ମିଳିଛି । ଅପରପକ୍ଷେ, କେହି ଜଣେ ଆଦିବାସୀ ବାଳିକା ଏହି ଗପ ବହି ପଢି ବୁଢୀ ବୟସରେ ତା ନାତୀ, ନାତୁଣୀକୁ ଶୁଆଇ ଦେଲାବେଳେ କହିପାରିଲା ତେବେ ଜାଣିବି, ମୁଁ କିଛି ଗୋଟା କରି ପାରିଛି ।

ଏହି ବହିଟିରେ ମୁଖ୍ୟତଃ ଅବିଭକ୍ତ କୋରାପୁଟ (ନବରଙ୍ଗପୁର, କୋରାପୁଟ, ରାୟଗଡା ଓ ମାଲ୍‌କାନ୍‌ଗିରି) ଜିଲ୍ଲାର ଆଦିବାସୀମାନଙ୍କର ଲୋକ କଥାଗୁଡିକୁ ସଂଗ୍ରହ କରାଯାଇଛି । ଏହି କାମଟିକୁ ସମ୍ପନ୍ନ କରିବା ପରେ ମୋର ଦୀର୍ଘ ବର୍ଷର ପରିଶ୍ରମ ସାର୍ଥକ ହୋଇ ପାରିଛି ।

କୋରାପୁଟ ଜିଲ୍ଲା ମୋତେ ଦେଇଛି ପର୍ଯ୍ୟାପ୍ତ ଅଭିଜ୍ଞତା ଓ ଅନୁଭୂତି । ଏଠାକାର ଆଦିବାସୀ ଜନଜୀବନ, ପାଣି, ପବନ, ବଣ ପାହାଡ ଓ ଦେଶିଆ ଭାଷା, ନାଚଗୀତ ଦ୍ୱାରା ମୁଁ ପ୍ରଭାବିତ

ହୋଇଛି । ବିଭୋର ହୋଇଛି । ମଗ୍ନ ହୋଇଛି । ଝରିଗାଁର କନ୍ଧ ବସ୍ତିରେ ପୂନେଇଁ ରାତିରେ ଜହ୍ନ ଆଲୁଅ ତଳେ କନ୍ଧ ଯୁବକ, ଯୁବତୀମାନଙ୍କ ସହ ନାଚିଛି । ସେମାନଙ୍କ ସହ କୁକୁଡା ମାଂସ ଖାଇଛି ଓ ମହୁଲ ପିଇଛି । ଅଣ୍ଟାକୁ ଅଣ୍ଟାରେ ହାତ ଛନ୍ଦି ପାଦକୁ ପାଦ ମିଶେଇ କନ୍ଧ ଯୁବତୀମାନଙ୍କ ସହିତ ନାଚିଛି, ଝୁମିଛି ଓ ମତୁଆଲା ହୋଇଛି । ସେହି ନାଚିବା ବେଳର ଅନୁଭୂତି ମୋ ପାଇଁ ସର୍ବକାଳୀନ ସ୍ମୃତି ପାଲଟିଛି । ସେମାନଙ୍କର ମୁରୁକି ମୁରୁକି ହସା ମୋତେ ଚହଲେଇ ଦେଇଛି । କନ୍ଧ ଯୁବକମାନେ କୁକୁଡା ଆଣି ଦେଇଛନ୍ତି, ତା ସାଥୀରେ ଟୋଲା ତେଲ, ଲୁଣ, ପିଆଜ ଦେଇଛନ୍ତି । ରୋଷେଇ କଲାବେଳେ କନ୍ଧ ଯୁବକ, ଯୁବତୀମାନେ ଘେରିକି ବସିଛନ୍ତି । ମୁଁ ଯେମିତି ସେମାନଙ୍କ ପାଇଁ ଈଶ୍ୱରଙ୍କ ପ୍ରତିନିଧି କିମ୍ବା ମଙ୍ଗଳ ଗ୍ରହରୁ ଆସିଥିବା ନୂତନ ଜୀବ ପାଲଟି ଯାଇଛି । କୋରାପୁଟ ଜିଲ୍ଲାର ଦଶମନ୍ତପୁର ଭଳି ଦୁର୍ଗମ ବ୍ଲକ୍‌ରେ ମୁଁ ଓ ମୋର କିଛି ଆଦିବାସୀ ବନ୍ଧୁ ରାତି କଟେଇଛୁ । ସେମାନଙ୍କ ସହ ମିଶି ପରଜାମାନଙ୍କ ଦୁଃଖକୁ ଅନୁଭବ କରିଛି । ଏହି ବ୍ଲକ୍‌ର ଚନ୍ଦେଇପଦର, ଗୋଠପଦର, ସିଟିକାସିଲି, ବେଦେଲା, ନାରଗାଁ, ହଳଦିଶିଲ, କୋରାଗୁଡା, ନୂଆଜଟିଆଗୁଡା ଆଦି ଜଙ୍ଗଲୀ ଗାଁଗୁଡିକରେ ରାତି ରାତି ରହି ପରଜା ବୁଢା,ବୁଢିମାନଙ୍କଠାରୁ ଗପ ଶୁଣିଛି ।

ସବୁବେଳେ ମୋ ପାଖରେ ଛୋଟ ଟେପ୍ ରେକର୍ଡରଟିଏ ଥିବ । ତା ସାଥୀରେ ଥିବ ଏକ ଫୋର୍ ପିକ୍ସେଲ୍ ଡିଜିଟାଲ୍ କ୍ୟାମେରା । ଏହି ଦୁଇଟି ସାଧନ ବିନା ମୋର ସେଇ ଆଦିବାସୀ ବସ୍ତିମାନଙ୍କୁ ଯିବା ଯେମିତି ନିରର୍ଥକ ମନେ ହେଉଥିବ । ଫଟୋ ଉଠାଇବାକୁ ଆଦିବାସୀ ଯୁବକ, ଯୁବତୀ ଏମିତିକି କତରା ଧରିବାକୁ ବସିଥିବା ଡୋକରା, ଡୋକରିମାନେ ବେଶ୍ ଆଗ୍ରହ ପ୍ରକାଶ କରୁଥିବେ । ମୁଁ ସେମାନଙ୍କ ଫଟୋ ଉଠାଇ ଖଣ୍ଡେଖଣ୍ଡେ କପି କରି ସେମାନଙ୍କୁ ଦେଉଥିବି । ସେମାନେ ଦୁନିଆର ସବୁକିଛି ପାଇଗଲା ପରି ମନେ କରୁଥିବେ । ସେମାନଙ୍କ ସାଥୀରେ ବସିଲାବେଳେ ସେମାନଙ୍କ ଗୀତ ଓ ଗପ ଟେପିଂ କରୁଥିବି । ବୁଢା, ବୁଢିମାନେ ସେମାନଙ୍କ ପିଲାବେଳର କାହାଣୀ ଶୁଣାଉଥିବେ । ସେମାନଙ୍କ ଭାଷା ମୁଁ ଭଲ ଭାବେ ବୁଝି ନପାରିଲେ ମଧ୍ୟ ମୋତେ କେହି ବୁଝାଇ ଦେଉଥିବେ ।

ଏସବୁ ଦୁର୍ଗମ ପାହାଡ, ବଣ ଅଞ୍ଚଳରେ ଭଲ ପାଣି ଟୋପାଏ ପିଇବା ମୋ ପାଇଁ ସ୍ୱପ୍ନ ଭଳି ନେ ହେଉଥିବ । ଝରଣାର ପାଣି ପିଇ ରାତି କଟାଉଥିବି । ମଶାମାନଙ୍କ ସହିତ ସାଲିସ୍ କରିବା ନ୍ତୁ ସେମାନେ ବାଦ ସାଧୁଥିବେ । ମୁଁ ଗୋଟିଏ ଭଲ କାମ କରିବାକୁ ଯାଉଛି ଏବଂ ଦୟାକରି ମୋତେ କାମୁଡ ନାହିଁ ବୋଲି ସେମାନଙ୍କୁ ଅନୁରୋଧ କରୁଥିବି । ହେଲେ ମୂର୍ଖ ମଶାମାନେ କିଛି ବି ଶୁଣୁ ନଥିବେ । କାମୁଡି ମୋ ରକ୍ତ ଶୋଷୁଥିବେ । କ୍ରମେ ମ୍ୟାଲେରିଆ ଜ୍ୱରରେ ପୀଡିତ ହୋଇ କିଛି ଦିନ ନିଜ ଗାଁକୁ ଫେରି ଯାଉଥିବି । କାମ ବାଧାପ୍ରାପ୍ତ ହେଉଥିବ ।

ଏଠାରେ ଦୀର୍ଘ ଚାରି ବର୍ଷ କାଳ ମୁଁ ଆଦିବାସୀଙ୍କ ଲୋକ ଗପ, ଲୋକ ଗୀତ, ଗୀତ କୁଡିଆ, ଗୀତ କୁଡିଆଣୀ ଗୀତ ସଂଗ୍ରହ କରିଛି । ତାହାକୁ ଏବେ ଏକ ସଂକଳନର ରୂପ ଦେବାକୁ ଯାଉଛି । ଏହାକୁ ନେଇ ମୁଁ 'ସମ୍ବାଦ' ପୃଷ୍ଠାରେ ଅନେକ ଫିଚର ସୃଷ୍ଟି କରିଛି । ପ୍ରଶଂସା ପାଇଛି ।

**ଲେଖକଙ୍କ ଅନ୍ୟାନ୍ୟ ବହି:**

୧. ମାଟିଗୀତ (କବିତା ସଂକଳନ)

୨. ତନୁକା ବଳକୁ ନେଇ ଯେତେସବୁ ବେକାରିଆ ଗପ (ଗପ ସଂକଳନ)

୩. ଭିଟାମିନ୍ (ଗପ ସଂକଳନ)

୪. ନବରଙ୍ଗପୁର ଜିଲ୍ଲାର ସଂସ୍କୃତି ଓ ପର୍ଯ୍ୟଟନ (ଫିଚର ସଂକଳନ)

୫. ବଣ ଡ଼ୁଙ୍ଗରର ଗପ (କୋରାପୁଟିଆ ଆଦିବାସୀ ଲୋକ ଗପ)





**ସମ୍ପର୍କ:**

୯୪୩୭୨-୧୩୮୫୪ (ସେଲ୍)

ମଗ୍ନ ମାନସ, ନିଗିନିପୁର, ସାନ ଜରିଆ, କେନ୍ଦ୍ରାପଡା (ଡାକ ଠିକଣା)

କିମ୍ବା

ଜିଲ୍ଲା ପ୍ରତିନିଧି, ସମ୍ବାଦ, ନବରଙ୍ଗପୁର

# ସୂଚୀପତ୍ର:



# କିମ୍ଭିରିଣୀ ଓ ବିଲୁଆ କାହାଣୀ

(ନବରଙ୍ଗପୁର, କନ୍ଧ ଲୋକ କଥା)

ଗୋଟିଏ ଜଙ୍ଗଲରେ ଗୋଟିଏ ବଡ଼ ପୋଖରୀ ଥିଲା । ସେହି ପୋଖରୀରେ ଅତଳତଳ ପାଣି ଥିଲା । କିମ୍ଭିରିଣୀଟିଏ ତାର ପିଲାମାନଙ୍କ ସାଥିରେ ସେହି ପୋଖରୀରେ ମହା ଆନନ୍ଦରେ ରହୁଥିଲା । କିମ୍ଭିରିଣୀଟିର ପଚାଶରୁ ଊର୍ଦ୍ଧ୍ୱ ପିଲାଛୁଆକିରି ଥିଲେ । ପିଲାମାନଙ୍କ ସହ କିମ୍ଭିରିଣୀ ବେଶ୍ ଆନନ୍ଦରେ ଦିନତକ କାଟୁଥିଲା ।

ଦିନେ ସେହି ପୋଖରୀ ବାଟ ଦେଇ ବିଲୁଆଟିଏ ଯାଉଥିଲା । ସେ ଜାଣିବାକୁ ପାଇଲା, ଏହି ପୋଖରୀରେ ପଚାଶରୁ ଊର୍ଦ୍ଧ୍ୱ କିମ୍ଭିର ଅଛନ୍ତି । ସେମାନଙ୍କୁ କିପରି କୌଶଳ କରି ଖାଇପାରିଲେ ତାର ଦୁଇ ମାସର ଭୋଜନ ଚିନ୍ତା କଟି ଯାଆନ୍ତା ବୋଲି ବିଲୁଆ ମନେମନେ ଭାବିଲା । ତେଣୁ ସେ ମନେମନେ ଏକ ଉପାୟ ପାଞ୍ଚିଲା । ବିଲୁଆ ବହୁ ଭାବିଚିନ୍ତି ଶେଷରେ ଗୋଟିଏ ବଢିଆ ଉପାୟ ବାହାର କଲା ।

ବିଲୁଆ ଆସି ସେହି ପୋଖରୀ ପାଖରେ ପହଞ୍ଚିଲା । କିମ୍ଭିରିଣୀ ବିଲୁଆକୁ ଦେଖି ବେଶ୍ ଆନନ୍ଦିତ ହୋଇ ପଡିଲା । ବିଲୁଆ କିମ୍ଭିରିଣୀ ମାଡାମ୍‌ଙ୍କୁ ନମସ୍କାର କରି ପିଲାମାନଙ୍କ ପାଠ ପଢା କଥା ବଖାଣିଲା । କେମିତି ପିଲାମାନେ ଅଙ୍କ, ପଣକିଆ ଶିଖି ଗଲେଣି । ଏକ, ଦୁଇ ଡଗଡଗ ହୋଇ ଡାକି ଯାଉଛନ୍ତି । ମିଶାଣ, ଫେଡାଣ ଶିଖି ଗଲେଣି ।

ବିଲୁଆ କହିଲା : ବୁଝିଲ ମାଡାମ୍ ଆପଣଙ୍କ ବଡ଼ ପୁଅ ବହୁତ ବୁଦ୍ଧିମାନ୍, ସେ ତ ଚଟାପଟ୍ ପାଠ ଶିଖି ଯାଉଛି । ସେ ବହୁତ ପଢିବ । ଦେଖିବ ସେ ଏ ଜଙ୍ଗଲର ସବୁଠୁ ବିଦ୍ୱାନ୍ ହେବ । କିମ୍ଭିରିଣୀ ବିଲୁଆ ପାଖରୁ ନିଜ ପୁଅର ଏଭଳି ପ୍ରଶଂସା ଶୁଣି ତା ମନ କୁଣ୍ଢେ ମୋଟ ହୋଇଗଲା ।

ବିଲୁଆ ପୁଣି କିମ୍ଭିରିଣୀକୁ କହିଲା : ବୁଝିଲ ମାଡାମ୍, ଆପଣଙ୍କର ତ କୋଡିଏ ପିଲା ପାଠ ପଢୁଛନ୍ତି । ଭଲ ମଧ୍ୟ ପଢୁଛନ୍ତି । ଅବଶିଷ୍ଟ ତିରିଶ୍ ପିଲା କ'ଣ ମୂର୍ଖ ହେବେ । ସେମାନଙ୍କୁ ବି ମୋ ସାଥୀରେ ଆଜି ପଠାଅ । ସେମାନେ ବି ସେମାନଙ୍କ ଭାଇ ଭଉଣୀମାନଙ୍କ ସାଥୀରେ ପାଠ ପଢିବେ । ବିଲୁଆର ଏହି କଥା କିମ୍ଭିରିଣୀ ମନକୁ ପାଇଲା । ସେ ଅବଶିଷ୍ଟ ତିରିଶ୍ ପିଲାଙ୍କୁ ବିଲୁଆ ସାଥୀରେ ପାଠ ପଢିବାକୁ ପଠେଇଲା ।

ବିଲୁଆ ଏଥର ବି ତିରିଶ୍ କିମ୍ଭିର ଛୁଆକୁ ନେଇ ତା ଘର ଅଭିମୁଖେ ଯାତ୍ରା କଲା । ଏଥର ବି ଏହି ତିରିଶ୍ କିମ୍ଭିର ଛୁଆଙ୍କୁ ନେଇ ସେହି ଗୁମ୍ଫା ମଧ୍ୟରେ ରଖିଲା । ସେମାନଙ୍କୁ ଗୋଟିଏ କରି ଗୋଟିଏ ପ୍ରତି ଦିନ ଖାଇବାକୁ ଲାଗିଲା । ଏମିତି ଖାଉ ଖାଉ ତିରିଶ୍ ଦିନରେ ସମସ୍ତ କିମ୍ଭିର ଛୁଆ ଶେଷ ହୋଇଗଲେ ।

ବିଲୁଆ ଏଥର କ'ଣ ଖାଇବ ତା ମୁଣ୍ଡରେ ପୁଣି ଚିନ୍ତା ପଶିଲା । ସେ ଏଥର ମା କିମ୍ଭିରିଣୀ ଉପରେ ଆଖି ପକେଇଲା । କେମିତି କିମ୍ଭିରିଣୀକୁ ଖାଇବ ଉପାୟ ପାଞ୍ଚିଲା ।

ଶେଷରେ ବିଲୁଆ ଯାଇ ସେହି ପୋଖରୀ ପାଖରେ ପହଞ୍ଚିଲା ।

କିମ୍ଭିରିଣୀ ବିଲୁଆକୁ ଦେଖି ନମସ୍କାର ହୋଇ ପଚାରିଲା : ଅବଧାନେ, ପିଲାମାନଙ୍କ ଖବର କେମିତି, ସେମାନେ କେମିତି ପାଠ ପଢୁଛନ୍ତି ଆଉ ସେମାନଙ୍କ ଦେହପା' କେମିତି ଅଛି ?

କିମ୍ଭିରିଣୀର ଏହି ପ୍ରଶ୍ନର ଉତ୍ତର କ'ଣ ଦେବ ଭାବି ଭାବି ବିଲୁଆ ଡରି ଯାଉଥାଏ । କିନ୍ତୁ ମନରେ ସାହାସ ବାନ୍ଧି କହିଲା : ମାଡାମ୍, ତମେ ତ ଭଲ ମା, ପିଲାମାନଙ୍କୁ ଛାଡି ଦେଇ ବେଶ୍ ଆରାମରେ ଏହି ପୋଖରୀ ଭିତରେ ଅଛ ! ଥରେ ଚାଲ ଦେଖି ଆସିବ, କେମିତି ପିଲାମାନେ ପାଠ ପଢୁଛନ୍ତି । କେତେ ଶିକ୍ଷିତ ହୋଇଗଲେଣି ।

କିମ୍ଭିରିଣୀ ବିଲୁଆ ମାଷ୍ଟ୍ରର କଥାର ମର୍ମ ବୁଝିପାରି ନିଜକୁ ଧିକାରିଲା । ସେ ତାର ପିଲାମାନଙ୍କୁ ଦେଖି ଆସିବା ପାଇଁ ବ୍ୟସ୍ତ ହୋଇ ଉଠିଲା । ସେ ବିଲୁଆ ମାଷ୍ଟ୍ର ସାଙ୍ଗରେ ତା ପିଲାମାନଙ୍କୁ ଦେଖିବା ପାଇଁ ବାହାରିଲା ।

ବିଲୁଆ ମାଷ୍ଟ୍ର ସାଙ୍ଗରେ କିମ୍ଭିରିଣୀ ପିଲାମାନଙ୍କୁ ଦେଖିବାକୁ ଚାଲିଲା । ବାଟରେ ଯାଉ

ଯାଉ ସନ୍ଧ୍ୟା ହୋଇଗଲା । ବିଲୁଆ କହିଲା: ମାଡାମ୍, ଆମ ଘର ତ ବହୁତ ବାଟ ରହିଲାଣି, ଏଣେ ସନ୍ଧ୍ୟା ବି ହୋଇଗଲାଣି। ଗୋଟେ କଥା କରିବା, ଆମେ ଏଇଠି କୋଉଠି ବାଟରେ ଆଜି ରାତିକ ଅଟକି ଯିବା । ପୁଣି ସକାଳ ହେଲେ ବାହାରିବା ।

ବିଲୁଆ କଥାରେ କିମ୍ଭିରିଣୀ ରାଜି ହେଲା । ସେମାନେ ନିକଟସ୍ଥ ଏକ ଚାଷୀର ଖଳାକୁ ଗଲେ। ଚାଷୀଟିଏ ତା ଖଳାରେ ନଡ଼ାରେ ଏକ ପଲା କରିଥାଏ।

ବିଲୁଆ କିମ୍ଭିରିଣୀକୁ କହିଲା: ମାଡାମ୍, ଆପଣ ସ୍ତ୍ରୀ ଲୋକ, ତେଣୁ ଆପଣ ଏହି ପଲା ଭିତରେ ଶୋଇ ପଡ଼। ମୁଁ ବାହାରେ ଶୋଉଛି। କିମ୍ଭିରିଣୀ ବିଲୁଆ କଥାରେ ରାଜି ହୋଇ ପଲା ଭିତରେ ଶୋଇଲା । ବିଲୁଆ ପଲା ଦ୍ୱାରରେ ଏକ ପଥର ରଖି କିଛି ସମୟ ବାହାରେ ଶୋଇ ରହିଲା । ସେମିତି ରାତି ଅଧିକ ହୋଇଛି, ବିଲୁଆ ନିକଟ ଗାଁକୁ ଯାଇ ନିଆଁ ଖଣ୍ଡେ ଧରିକି ଆସିଲା । କିମ୍ଭିରିଣୀ ଶୋଇଥିବା ପଲାରେ ନିଆଁ ଲଗେଇ ଦେଲା ।

କିମ୍ଭିରିଣୀ ଆଉ ବାହାରକୁ ବାହାରି ନ ପାରି ତା ଭିତରେ ପୋଡି ହୋଇ ମଲା ।

କିମ୍ଭିରଣୀକୁ ଖାଇବ ବୋଲି ବିଲୁଆ ଏକଦମ୍ ନିଶାରେ ମସ୍‌ଗୁଲ୍ ହୋଇଯାଇଥାଏ। ଏତେବଡ଼ କିମ୍ଭିରିଣୀର ମାଂସ ସେ ଖାଇବାକୁ ଅପେକ୍ଷା କରିଥାଏ। ମାଂସ ଖାଇବା ନିଶାରେ ସେ ଏମିତି ଭାବେ ମଗ୍ନ ହୋଇଯାଇଥାଏ, ବାହାରେ କ'ଣ ଘଟିଲା ନ ଘଟିଲା ସେଥିପ୍ରତି ନଜର ନଥାଏ।

ଏଣେ ଧାନ ଖଳାରେ ନିଆଁ ଜଳିବାର ଦେଖି ଚାଷୀ ଓ ତାର ପରିବାର ଲୋକେ ଠେଙ୍ଗା ବାଡି ଧରି ଧାଇଁ ଆସିଲେ। ବିଲୁଆ ସେମିତି ଏକ ଲକ୍ଷ୍ୟରେ କିମ୍ଭିରିଣୀକୁ ଖାଇବ ବୋଲି ଅପେକ୍ଷା କରି ଗଛ ମୂଳେ ବସି ରହିଥାଏ। ଏଣେ ହୋ ହଲ୍ଲା କରି ଚାଷୀ ଓ ଗାଁ ଲୋକମାନେ ଠେଙ୍ଗାବାଡି ଧରି ଧାଇଁ ଆସିଲେ।

ବିଲୁଆଟି ଗଛମୂଳେ ବସିଥିବାର ଗାଁ ଲୋକେ ଦେଖି ଠେଙ୍ଗାରେ ପାହର ପରେ ପାହାର ପକେଇବାରେ ଲାଗିଲେ। ବିଚରା ବିଲୁଆଟି ଗାଁ ଲୋକଙ୍କ ଠେଙ୍ଗା ପାହାରରେ ସେଇଠି ସଫା ହୋଇଗଲା ।

ଏଇଠି ମନେ ରଖିବାକୁ ହେବ, ଯେ ପାଞ୍ଚେ ପର ମନ୍ଦ, ତା ମନ୍ଦ ପାଞ୍ଚନ୍ତି ଗୋବିନ୍ଦ। ବିଲୁଆ ଯେମିତି କିମ୍ଭିରିଣୀର ସବୁ ଛୁଆକୁ ଖାଇ ସାରି ଶେଷରେ କିମ୍ଭିରିଣୀକୁ ଖାଇବାକୁ ଯୋଜନା କରିଥିଲା, ଶେଷରେ ଅତି ଲୋଭରୁ ସେ ନିଜେ ମଲା।





# ମାଲ୍ୟାଣି ଝିଅ ଓ ସାପ କାହାଣୀ

(ନବରଙ୍ଗପୁର, ଭତରା ଲୋକ କଥା)

ଛୋଟ ଝିଅଟିଏ ଶେଯରେ ଶୋଇଥାଏ। ତା ପାଖରେ ସାପଟିଏ ଫଣା ଟେକି ରହିଥାଏ।

ଗୋଟିଏ ଶେଯରେ ସାପ ଓ ଶିଶୁଟି ଶୋଇଥିବାର ଦେଖି ଘର ଲୋକେ ଭୟ ପାଇଗଲେ। ଶିଶୁଟିର ପିଉସୀ ଏହି ଦୃଶ୍ୟଟିକୁ ଦେଖି ହାଉଳି ଖାଇଗଲା। ବଡ଼ ପାଟିକରି ସମସ୍ତଙ୍କୁ ଡାକ ପକେଇଲା। ସମସ୍ତେ ଆସି ସେଠାରେ ପହଞ୍ଚି ଯିବାରୁ ସାପଟି ସେଠାରୁ ପଳେଇଗଲା।

ସାପଟି ପଳେଇ ଗଲା ସତ, କିନ୍ତୁ ସେତିକିବେଳୁ ପିଉସୀ ମନକୁ ପାପ ଛୁଇଁଲା। ଶିଶୁଟି ସହିତ ସାପ ଶୋଇଥିବାରୁ ପିଉସୀ ମନରେ ସନ୍ଦେହ ବଢିଲା। ବୋଧେ ଶିଶୁଟି ସାପମାନଙ୍କର ବଂଶର ଏବଂ ମଣିଷମାନଙ୍କ ପାଇଁ ଅମଙ୍ଗଳକାରୀ ଭାବି ଶିଶୁଟିକୁ ନେଇ ବଣରେ ଫିଙ୍ଗି ମାରି ଦେଇ ଆସିବାକୁ ପିଉସୀ ମନେମନେ ଚିନ୍ତାକଲା।

ପିଉସୀର ଏପରି କଥା ଜାଣିପାରି ଶିଶୁ କନ୍ୟାଟିର ବାପା ତାକୁ ଲୁଚେଇକରି ନେଇ ହାଟକୁ ଚାଲିଗଲା। ବାଟରେ ଏକ ଗଛ ମୂଳେ ଶିଶୁଟିକୁ ନ ମାରି ଠାକୁରଙ୍କ ଭରସାରେ ଶୁଏଇ ଦେଇ ଚାଲି ଆସିଲା।

ଏହି ସମୟରେ ସେହି ବାଟ ଦେଇ ଏକ ମାଳି ଓ ମାଳିଆଣି ଆସୁଥିଲେ। ଝିଅଟିକୁ ଦେଖି ସେମାନେ ଉଠେଇକି ନେଇ ଆସିଲେ। ଶ୍ରଦ୍ଧାରେ ଝିଅଟିକୁ ଧରିଲେ ଓ ଗେଲ କଲେ। ସେମାନେ ହାଟରୁ ଆଣିଥିବା ନୂଆ ହାଣ୍ଡିରେ ଝିଅଟିକୁ ରଖିଲେ। ଏହି ହାଣ୍ଡିରେ ପୂରେଇ ଝିଅଟିକୁ ଘରକୁ ନେଇ ଆସିଲେ। ଘରେ ଝିଅଟିକୁ ଲୁଚେଇକି ରଖିଲେ। ଏ କଥା କେହିବି ଜାଣି ପାରିଲେ ନାହିଁ। ପଡ଼ିଶା ଘର ଲୋକେ ଏ ସମ୍ପର୍କରେ କିଛି ବି ଯୋର୍ ଶବ୍ଦ ଜାଣି ପାରିଲେନି। ଏହାପରେ ମାଲ୍ୟାଣି ବୁଢ଼ୀ ମନରେ ଗୋଟିଏ ଫନ୍ଦି ବାହାର କଲା। ମାଲ୍ୟାଣୀ ହାଟକୁ ଯାଇ ଗୋଟିଏ ଟାଙ୍ଗା (ମାଟି ହାଣ୍ଡି) ଆଣିଲା। ତାହାକୁ ପେଟରେ ଦେଇ ଉପରେ ଶାଢି ପିନ୍ଧିଲା, ଯେମିତି ସେ ଗର୍ଭବତୀ ଅଛି ବୋଲି ଜଣାପଡିଲା। ଏମିତି ଅବସ୍ଥାରେ ବାଇଗଣ ବିକିବାକୁ ଗାଁକୁ ଗଲା। ଗାଁର ପିଲା, ଟୋକୀ, ଭୂଆସୁଣୀମାନେ ମାଲ୍ୟାଣୀର ଏପରି ଅବସ୍ଥା ଦେଖି କାବା ହୋଇଗଲେ। ସେମାନେ ଭାବିଲେ ମାଲ୍ୟାଣୀର କ'ଣ ପିଲାପିଲି ହେବ।

ଗାଁର ପିଲା, ଟୋକୀମାନେ ମାଲ୍ୟାଣୀକୁ ପଚାରିଲେଃ ବୁଢ଼ୀ ବୟସରେ ଗର୍ଭ ଯାଇଛୁ, ବୁଢାକାଳେ ବାପା, ମା ହେବ।

ବୁଢି କହିଲାଃ ଆମର ବକଟେ ବୋଲି ପିଲା ନାହିଁ, ଭଗବାନ ବୁଢି ବେଳକୁ ଦୟା କଲେ। ଭଗବାନ ଆମ ପ୍ରାର୍ଥନା ଶୁଣିଲେ। ବାଇଗଣ ବିକି ସାରି ମାଲ୍ୟାଣି ବୁଢି ଘରକୁ ଫେରିଲା।ଘର ପାଖରେ ପହଞ୍ଚି ବୁଢି କହିଲାଃ ମୋର ଭୀଷଣ ପେଟ ବଥା ହେଉଛି। କଷ୍ଟ ହେଉଛି। ଏହା ପରେ ବୁଢି ଘରେ ପଶି କବାଟ କିଳିଦେଲା। କିଛି କ୍ଷଣ ପରେ ବୁଢିର ଝିଅଟିଏ ହୋଇଛି ବୋଲି ବୁଢା କହିଲା। ପଡିଶା ଘରର ଲୋକେ ଏହା ଦେଖିବାକୁ ସେଠାରେ ରୁଣ୍ଡ ହୋଇଗଲେ। ସାଇପଡିଶାମାନେ ବୁଢିର ଝିଅକୁ ଦେଖି ବହୁତ ଖୁସି ହେଲେ। ବୁଢା କହିଲା ଆମକୁ ଏ ବୟସରେ ଭଗବାନ ଝିଅଟେ ଦେଇଛନ୍ତି।

ବୁଢା ଖୁସି ହୋଇ ସାଇ ପଡିଶାମାନଙ୍କୁ ଡାକିଲା ଓ କହିଲାଃ ଆସ ଝିଅର ନାଁ ଦେବା। ପଡିଶା ଘର ଲୋକେ ଆସିଲେ ଓ ଜ୍ୟୋତିଷ ଡକାଇଲେ। ଜ୍ୟୋତିଷ ବୁଢା, ବୁଢିକୁ କହିଲେଃ ତମ ଘରକୁ ତୁଳସୀ ଦେବୀ ବିଜେ କରିଛନ୍ତି। ତେଣୁ ତାର ନାମ ତୁଳସୀ ରଖ।

ଶଶିକଳା ପରି ଝିଅ ଦିନକୁ ଦିନ ବଡ ହେବାରେ ଲାଗିଲା। ଟୋକୀପିଲାଙ୍କ ସାଥିରେ ରାଜା ଘର ଦୁଆରକୁ ଖେଳିବାକୁ ଗଲା। ରାଜା ଘର ଦୁଆରେ ପିଲାମାନେ ବିଭିନ୍ନ ପ୍ରକାର ଖେଳ ଖେଳନ୍ତି। ରାଜାଙ୍କର ବି ତୁଳସୀ ବୟସର ଏକ ଝିଅ ଥିଲା। ରାଜା ଝିଅ ଓ ତୁଳସୀ ସାଥି ହୋଇ ଖେଳିଲେ। ଦୁହେଁ ଧୂଳି ମାଟିରେ ଖେଳିଲେ, ଝୁଲଣାରେ ଝୁଲିଲେ। ତୁଳସୀ ଏତେ ସୁନ୍ଦରୀ ଥିଲା, ରାଜା ଝିଅ ତା ଆଗରେ ଫିକା ପଡିଯାଉଥିଲା।

ତୁଳସୀର ସୌନ୍ଦର୍ଯ୍ୟ ରାଜା ଦେଖିଲେ ନିଜ ଝିଅ ପ୍ରତି ରାଜାଙ୍କର ଉଦାସୀନତା ଆସିବ ଭାବି ରାଣୀମାନେ ତୁଳସୀ ପ୍ରତି ଈର୍ଷାପରାୟଣ ହୋଇ ଉଠିଲେ। ରାଣୀମାନେ ମିଶି ତୁଳସୀକୁ ଗାଳିଗୁଲଜ କଲେ ଓ ସେଠାରୁ ବାହାର କରି ଦେଲେ। ରାଜା ଘର ଦୁଆରକୁ ଆଉ ନ

ଆସିବାକୁ ରାଣୀମାନେ ତାକୁ କହିଲେ। ତୁଳସୀ ମନ ଦୁଃଖ କରି ସେଠାରୁ ଚାଲିଗଲା। ରାଜା ଝିଅ ଏ ଘଟଣାରେ ମନ ଦୁଃଖ କଲା ଓ କାନ୍ଦିଲା।

ଦିନ ପରେ ଦିନ ଗଡି ଚାଲିଲା। ତୁଳସୀ କ୍ରମେ ଯୌବନପ୍ରାପ୍ତ ହେଲା। ମାଲ୍ୟାଣି ନିଜର ଫୁଲ ବେପାର ଦେଖୁଥାଏ। ଏହା ମଧ୍ୟରେ ତୁଳସୀ ମଧ୍ୟ ଫୁଲ ବିକିବାକୁ ଗଲା। ଗାଁ ଗାଁ ବୁଲି ଫୁଲ ବିକିଲା।

ଦିନେ ତୁଳସୀ ଫୁଲ ଚାଙ୍ଗୁଡି ଧରି ରାଜ ନଅରକୁ ଗଲା। ରାଣୀମାନେ ତାର ଯୌବନ ଓ ସୌନ୍ଦର୍ଯ୍ୟ ଦେଖି କାବା ହୋଇଗଲେ ଓ ଈର୍ଷାରେ ଜଳିବାକୁ ଲାଗିଲେ। ରାଜା ତୁଳସୀକୁ ଦେଖିଲେ କାଳେ ତାକୁ ମୁଖ୍ୟ ରାଣୀ କରିଦେବେ ଭାବି ରାଣୀମାନଙ୍କର ମତି ଭ୍ରମ ହୋଇଗଲା। ଏଣୁ ଏହି ରୂପବତୀକୁ ମାରି ରାଣୀ ଅନ୍ତପୁରରେ ପୋତିଦେଲେ ରାଜା ଆଉ ଜାଣି ପାରିବେ ନାହିଁ ବୋଲି ରାଣୀମାନେ ଭାବିଲେ। ଏହି ମାଲ୍ୟାଣୀ କନ୍ୟା ବଞ୍ଚି ରହିଲେ ରାଣୀ ହେବା ସୁନିଶ୍ଚିତ ଭାବି ରାଣୀମାନେ ମନେମନେ ଭୟ ପାଇଗଲେ।

ଏଣୁ ରାଣୀମାନେ ତାଙ୍କର ଦୂତକୁ ପଠାଇ ତୁଳସୀକୁ ମାରିବାକୁ ବ୍ୟବସ୍ଥା କଲେ। ଦୂତମାନେ ତାକୁ ଜଙ୍ଗଲକୁ ଧରି ନେଇ ମାରି ଦେବାକୁ ଉଦ୍ୟତ ହେଲା ବେଳକୁ ତୁଳସୀ ସେମାନଙ୍କୁ କହିଲା: ମୋତେ ମାର ନାହିଁ, ମୋତେ ଯଦି ମାରିବାକୁ ଚାହୁଁଛ, ତେବେ ମୋର ଜୀବନ ରାଜାଙ୍କ ପାଟ ହାତୀ ପାଖରେ ଅଛି, ତାକୁ ମାରିଲେ ଯାଇ ମୁଁ ମରିବି। ନିର୍ବୋଧ ଦୂତମାନେ ତୁଳସୀକୁ ଛାଡି ଦେଇ ଯାଇ ରାଜାଙ୍କ ପାଟ ହାତୀକୁ ମାରିଦେଲେ। ଏହା ମଧ୍ୟରେ ତୁଳସୀ ସେଠାରୁ ଖସି ଚାଲି ଆସିଲା।

ତୁଳସୀକୁ ମାରିବାକୁ ହୋଇଥିବା ଯୋଜନା କଥା ରାଜା ଝିଅ ଜାଣି ପାରିଲା। ସେ ତୁଳସୀ ପାଖକୁ ଆସିଲା ଓ କହିଲା: ତୋତେ କେହିବି ମାରି ପାରିବେନି। ତତେ ଯଦି ମାରିବେ, ତେବେ ପ୍ରଥମେ ମତେ ମାରିବେ।

ଏହାର କିଛି ଦିନ ପରେ ପୁଣି ତୁଳସୀ ଆଉ ଦିନେ ରାଜ ନଅରକୁ ଫୁଲ ନେଇ ଗଲା। ସେଦିନ ମଧ୍ୟ ରାଣୀମାନେ ତାକୁ ମାରିବାକୁ ଯୋଜନା କଲେ। ରାଣୀମାନେ ତାଙ୍କର ସୈନିକକୁ ପଠାଇ ତୁଳସୀକୁ ଜଙ୍ଗଲ ମଧ୍ୟରେ ନେଇ ମାରିଦେବାକୁ କହିଲେ। ସୈନିକମାନେ ତୁଳସୀକୁ ନେଇ ଜଙ୍ଗଲ ମଧ୍ୟକୁ ଚାଲିଗଲେ। ସୈନିକମାନେ ଯେତେବେଳେ ତୁଳସୀକୁ ମାରିବାକୁ ଉଦ୍ୟତ ହେଲେ ତୁଳସୀ କହିଲା: ମୋ ବାପା ଜଣେ ଯାଦୁଗର। ତମେ ମୋତେ ମାରିବାକୁ ଆଣିଥିବା କଥା ସେ ଜାଣି ପାରୁଛି। ସାତ ସମୁଦ୍ର ମଧ୍ୟରେ ସାତ ଧାର ସାତ ବଖରା ପଥର ଘର ମଧ୍ୟରେ ଅଛି ଗୋଟିଏ ପ୍ରତିମା। ସେ ପ୍ରତିମା ପିନ୍ଧିଛି ସାତ ତୋଳା ସୁନା ମାଳି। ସେ ସାତ ତୋଳା ସୁନା ମାଳିରେ ଅଛି ମୋ ଜୀବନ। ତମେମାନେ ମୋତେ ମାରିବାକୁ ହେଲେ ସେଠାକୁ ଯିବାକୁ ହେବ। ସେଠାକୁ ଯାଇ ସେହି ପ୍ରତିମାର ବେକକୁ ଖଣ୍ଡା ଚୋଟରେ ଖଣ୍ଡଖଣ୍ଡ କରିଦେବ। ପ୍ରତିମାର ବେକ ସହିତ ସାତଟି ମାଳି ଛିଣ୍ଡି ପଡିବ। ତା ପରେ ଯାଇ ମୁଁ ମରିବି

ବୋଲି ତୁଳସୀ ତାର ମୃତ୍ୟୁ ରହସ୍ୟ ବତେଇ ଦେଲା ।

ତୁଳସୀ ପାଖରୁ ଏହି ରହସ୍ୟ ଶୁଣି ସୈନିକମାନେ ସମୁଦ୍ର ମଧ୍ୟକୁ ଗଲେ । ସେହି ପ୍ରତିମା ଥିବା ସ୍ଥାନରେ ପହଞ୍ଚିଲେ । ସେମାନେ ଗୋଟିଏ ଚୋଟରେ ପ୍ରତିମାର ବେକକୁ ଦିଗଡ଼ କରିଦେଲେ ଓ ସୁନା ମାଳି ନେଇ ଚାଲି ଆସିଲେ । ସୈନିକମାନେ ସେ ମାଳିକୁ ଆଣି ରାଣୀମାନଙ୍କୁ ଭେଟି ଦେଲେ । ରାଣୀ ଖୁସି ହେଲେ । ସେତେବେଳକୁ ତୁଳସୀ ମରି ଯାଇଥାଏ । ରାଣୀ ସୈନିକମାନଙ୍କୁ କହିଲେ: ଏ ଶବକୁ ନେଇ ଅଗନା ଅଗନି ବନସ୍ତରେ ଫିଙ୍ଗି ଦେଇ ଆସ ।

ସୈନିକମାନେ ତୁଳସୀର ଶବକୁ ନେଇ ଜଙ୍ଗଲକୁ ଯାଉଥିଲେ । ଏହି ସମୟରେ ଜଙ୍ଗଲ ବାଟ ଦେଇ ସେପଟୁ ରାଜା ଆସୁଥିଲେ । ସୈନିକ ଓ ରାଜାଙ୍କ ମୁହାଁମୁହିଁ ହୋଇଗଲା । ସୈନିକମାନେ ଶବଟିକୁ ଡାଙ୍କିକରି ନେଉଥିଲେ ମଧ୍ୟ ତାର ହାତ ପାପୁଲି ବାହାରକୁ ଦେଖା ଯାଉଥିଲା । ରାଜାଙ୍କ ନଜର ହାତ ପାପୁଲି ଉପରେ ପଡିଗଲା । ରାଜା ଘୋଡାରୁ ଓହ୍ଲାଇ ଶବବାହକମାନଙ୍କୁ ଅଟକାଇଲେ । ଏହି ଶବଟି କେଉଁ ସୁନ୍ଦରୀ ତରୁଣୀର ବୋଲି ରାଜା ସେମାନଙ୍କୁ ପୁଛା କଲେ । ଶବ ବାହକମାନେ କହିଲେ: ଏ ଶବ ମାଲ୍ୟାଣି ଝିଅର । ମାଲ୍ୟାଣିର କେହି ଜ୍ଞାତି କୁଟୁମ୍ବ ନଥିବାରୁ ଏ ଶବକୁ ସେମାନେ ସତ୍କାର କରିବାକୁ ନେଉଛନ୍ତି ବୋଲି ସୈନିକମାନେ ରାଜାଙ୍କୁ କହିଲେ ।

ରାଜା ଏତେ ସୁନ୍ଦର ହାତ ପାପୁଲି ଦେଖିବା ପରେ ଶବଟି ଉପରେ ଘୋଡାଯାଇଥିବା କପଡାକୁ କାଢିବାକୁ କହିଲେ । ମୃତ ତୁଳସୀର ସୌନ୍ଦର୍ଯ୍ୟ ଦେଖି ରାଜା ବିମୋହିତ ହୋଇଗଲେ । ଏତେ ସୁନ୍ଦରୀ ତରୁଣୀ ହଠାତ୍ କେମିତି ମଲା ରାଜା ସନ୍ଦେହ କଲେ । ଏହାର ତଦନ୍ତ କରିବାକୁ ସଙ୍ଗେସଙ୍ଗେ ନିର୍ଦ୍ଦେଶ କଲେ । ରାଜା ଏମିତି ଚିନ୍ତା କରୁଥିବା ସମୟରେ ସୈନିକମାନେ ଥରିବାକୁ ଲାଗିଲେ । ଏହି ସମୟରେ ହଠାତ୍ ଗଛରୁ ଏକ ବୁଢା ମାଙ୍କଡ଼ ତଳକୁ ଓହ୍ଲାଇ ଆସିଲା । ତୁଳସୀର ଶବ ନିକଟରେ ପହଞ୍ଚି ମୁଣ୍ଡ ଗଣ୍ଡିକୁ ଯୋଡି ଦେଲା । ସେ ଜଙ୍ଗଲରୁ କିଛି ଚେର ମୂଳି ଆଣି ଶବଟିର କଟା ସ୍ଥାନରେ ଲଗାଇ ଦେଲା । ଏହା ପରେ ମାଙ୍କଡ଼ଟି କିଛି ମନ୍ତ୍ର ଉଚ୍ଚାରଣ କରି କହିଲା: ଦିଦି ଏଥର ଉଠ, ଆଉ ଶୋଇ ରହିଲ କାହିଁକି? ଏହା ସଙ୍ଗେସଙ୍ଗେ ତୁଳସୀ ଉଠିବସିଲା । ତାର ମୁଖ ମଣ୍ଡଳ ସୌନ୍ଦର୍ଯ୍ୟ ରେଣୁରେ ଝଲସି ଉଠିଲା ।

ମାଙ୍କଡ଼ ସମସ୍ତ ବୃତ୍ତାନ୍ତ ରାଜାଙ୍କ ନିକଟରେ ବର୍ଣ୍ଣନା କଲା ଏବଂ କହିଲା: ମହାରାଜ, ଏହି ଝିଅଟି ଆପଣଙ୍କ ଭୋଗ୍ୟ ଅଟେ । ଏଣୁ ଆପଣ ଏହାକୁ ଗ୍ରହଣ କରନ୍ତୁ । ରାଜା ଆନନ୍ଦ ମନରେ ତୁଳସୀକୁ ନେଇ ରାଜ ନଅରକୁ ବାହୁଡିଲେ । ଯେଉଁ ରାଣୀମାନେ ତୁଳସୀକୁ ମାରିଥିଲେ ସେମାନଙ୍କୁ ଶୂଳୀରେ ବସାଇଦେଲେ ।



ଦେଖିବାକୁ ପାଆନ୍ତି। ଥରେ ଗାଁର ପିଲାମାନେ ଡୁଙ୍ଗୁରୁ ବୁଢାକୁ କହିଲେ: ଅଜା, ଆମେମାନେ ତମ ସାଙ୍ଗରେ କେନ୍ଦୁ ତୋଳିବାକୁ ବଣକୁ ଯିବୁ ଓ ପାଚିଲା କେନ୍ଦୁ ଖାଇବୁ।

ଡୁଙ୍ଗୁରୁ ବୁଢା ପିଲାମାନଙ୍କର ଏତେ ମାତ୍ରାରେ ଉତ୍ସାହ ଦେଖି ସେମାନଙ୍କୁ ମନା କରି ପାରିଲାନାହିଁ। ସେମାନଙ୍କୁ ସାଥିରେ ଜଙ୍ଗଲକୁ ନେବାକୁ ହଁ ଭରିଲା। ବୁଢା ସାଥୀରେ ଗାଁର ମୋଟ ୨୫ ଜଣ ପିଲା ଜଙ୍ଗଲକୁ ବାହାରିଲେ।

ବୁଢା ଓ ପିଲାମାନେ ମିଶି ଜଙ୍ଗଲରୁ କେନ୍ଦୁ ତୋଳିଲେ। ଭୋକ ହେବାରୁ ତୋଳିଥିବା କେନ୍ଦୁତକ ଖାଇଲେ। କ୍ରମେ ସେମାନଙ୍କୁ ନିଦ ଆସିବାରୁ ସେମାନେ ପତ୍ର ପାରି ତା ଉପରେ ଶୋଇଲେ। ଶୋଇ ଉଠିଲା ପରେ ସେମାନଙ୍କୁ ଶୋଷ ହେବାରୁ ପାଣି ପିଇବାକୁ ବୁଢାକୁ କହିଲେ। ପିଲାମାନେ ବୁଢାକୁ ପାଣି ପିଇବାକୁ କହିବାରୁ ବୁଢା ପିଲାମାନଙ୍କୁ କହିଲା ନିକଟରେ କେଉଁଠି ପାଣି ଅଛି ଦେଖିବାକୁ ପଡିବ। ତେଣୁ ସେ ଜଣେ ପିଲାକୁ କହିଲା: ତୁ ଗଛ ଉପରକୁ ଚଢି ଯାଆ ଓ ସେଠାରୁ ଥାଇ ତଳକୁ ଅନେଇ ଦେଖ୍ କେଉଁଠି ପାଣି ଅଛି। ବୁଢା ପିଲାଟିକୁ କହିଲା: ଯେଉଁଠି ପକ୍ଷୀମାନେ ଉଡି ବୁଲୁଥିବେ ଜାଣିବୁ ସେଇଠି ନିଶ୍ଚୟ ପାଣି ଥିବ। ତାପରେ ଆମେ ସେଠାକୁ ପାଣି ପାଇଁ ଯିବା। ଏହା ପରେ ସେମାନଙ୍କ ମଧ୍ୟରୁ ଜଣେ ପିଲା ଗୋଟିଏ ଉଚ୍ଚା ଗଛ ଉପରକୁ ଚଢି ପାଣି କେଉଁଠି ଅଛି ଦେଖିଲା। ପିଲାଟି ଗଛକୁ ଚଢିଯିବା ପରେ ତଳକୁ ଅନେଇ ଦେଖିଲା ଦୂରରେ କିଛି ପକ୍ଷୀ ଏକ ପୋଖରୀ ନିକଟରେ ଉଡି ବୁଲୁଛନ୍ତି। ତା ପରେ ପିଲାଟି ଗଛରୁ ତଳକୁ ଓହ୍ଲାଇଲା। ଗଛରୁ ତଳକୁ ଓହ୍ଲାଇ ସାରି ପିଲାଟିର କହିବା ଅନୁଯାୟୀ ବୁଢା ଓ ଅନ୍ୟ ପିଲାମାନେ ସେଠାକୁ ଗଲେ ଓ ପାଣି ପିଇଲେ। ପିଲାମାନେ ମନ ଭରି ପାଣି ପିଇଲେ। ଏବଂ ଶେଷରେ ବୁଢା କହିଲା: ମୁଁ ବି ପାଣି ପିଇବି। ତେଣୁ ବୁଢା ପାଣି ପିଇବାକୁ ଆରମ୍ଭ କଲା। ବୁଢା ଏମିତି ପାଣି ପିଇଲା, ପିଇଲା, ପିଇଲା ପୋଖରୀର ସବୁ ପାଣି ଶୁଖିଗଲା। ବୁଢା ପାଟି ଲଗେଇ ସବୁତକ ପାଣି ଶୋଷି ଦେଲା। ପିଲାମାନେ ଦେଖି କାବା।

ପିଲାମାନେ ଉତ୍ସୁକତାର ସହ ବୁଢାକୁ ପଚାରିଲେ: ଏମିତି କେମିତି ହେଲା, ପୋଖରୀର ସବୁତକ ପାଣି କ'ଣ ତମେ ପିଇଦେଲ? ଏ ପାଣିତକ କୁଆଡେ ଗଲା; ଏମିତି ଅନେକ ପ୍ରଶ୍ନ ପିଲାମାନେ ବୁଢାକୁ ପଚାରିଲେ। ବୁଢା କହିଲା: ଏହା ହେଉଛି ଯାଦୁ ମନ୍ତ୍ରର କମାଲ୍।

ଜଳାଶୟରୁ ଜଳ ଶୁଖିଯିବାରୁ ସେଠାରେ ଥିବା ମାଛଗୁଡିକ ଉପରେ ପଡି ଛଟଛଟ ହେଲେ। ମାଛ ଦେଖି ପିଲାମାନେ ଖୁସିରେ ଡେଇଁ ଉଠିଲେ ଏବଂ କହିଲେ ଏ ମାଛକୁ ଆମେ ନେବା। ବୁଢା ସେଉଟୁ ମନ୍ତ୍ର ବଳରେ ଏକ କୁହୁକ ଧୁଣ୍ଡି (ପାଚିଆ) ବାହାର କଲା। ଏବଂ ପିଲାମାନଙ୍କୁ ସେହି ଧୁଣ୍ଡି ଦେଇ କହିଲା ସେଥିରେ ସବୁତକ ମାଛ ଭର୍ତ୍ତି କର। ପିଲାମାନେ ସବୁତକ ମାଛକୁ ସେହି କୁହୁକ ଧୁଣ୍ଡିରେ ଭର୍ତ୍ତି କଲେ। ଏବଂ ଏହା ପରେ ସେଠାରୁ ଅନ୍ୟତ୍ର

ଚାଲିଲେ। ଏତିକିବେଳେ ପିଲାମାନଙ୍କୁ ପୁଣି ଭୋକ ହେଲା। ଏହି ଛଟଛଟିଆ ଯକ ମାଛ ଦେଖି ପିଲାଙ୍କ ପାଟିରୁ ଲାଳ ଗଡିଲାଣି। ବୁଢା କହିଲା; ଏହି ମାଛକୁ ପୋଡି ଖାଇବା। ତେବେ ନିଆଁ କେଉଁଠୁ ଆସିବ? ବୁଢା ଚିନ୍ତାରେ ପଡିଗଲା।

ବୁଢା କହିଲା ଜଙ୍ଗଲରେ କେଉଁଠି ନିଆଁ ଅଛି ଖୋଜିବାକୁ ହେବ। ତେଣୁ ବୁଢା ପାଞ୍ଚ ଜଣ ପିଲାଙ୍କୁ ଜଙ୍ଗଲର ଗୋଟିଏ ଦିଗକୁ ନିଆଁ ଖୋଜିବାକୁ ପଠେଇଲା। ଏହି ପାଞ୍ଚ ଜଣ ପିଲା କିଛି ବାଟ ଗଲାପରେ ସେମାନଙ୍କ ମଧ୍ୟରୁ ଜଣେ ପିଲା କହିଲା: ଆମେ ପୁଣି ଏକ ଉଚ୍ଚା ଗଛକୁ ଚଢି ଚାଲ ଦେଖିବା କେଉଁଠି ନିଆଁ ଅଛି। ଜଣେ ପିଲା ସଙ୍ଗେସଙ୍ଗେ ଏକ ଉଚ୍ଚ ଗଛକୁ ଚଢିଲା। ଚଢି ଦେଖିଲା ଏକ ଦିଗରୁ ଧୂଆଁ ବାହାରୁଛି। ତେଣୁ ଏହି ପିଲାମାନେ ସେହି ଦିଗରେ ଗଲେ। କିଛି ବାଟ ଗଲାପରେ ପିଲାମାନେ ଏକ ଘର ଦେଖିବାକୁ ପାଇଲେ। ସେଠି ଯାଇ ଦେଖିଲେ ଗୋଟିଏ ବୁଢୀ ସେଠାରେ ନିଆଁ ଜାଳି ଶେକି ହେଉଛି। ସେ ବୁଢୀଟି ବାସ୍ତବରେ ଅସୁରୁଣୀ ବୁଢି ଥିଲା। ପିଲାମାନେ ଏହା ଜାଣି ପାରିଲେ ନାହିଁ। କିନ୍ତୁ ଅସୁରୁଣୀ ବୁଢିଟି ଅନ୍ଧ ଥିଲା। ତାର ଏକମାତ୍ର ଝିଅ ଥିଲା। ଝିଅ ଯେତେବେଳେ ଜଙ୍ଗଲକୁ ଖାଦ୍ୟ ପାଇଁ ଯାଇଥିଲା। ସେ ଯାଇ ଜଙ୍ଗଲରୁ ଖାଦ୍ୟ ସଂଗ୍ରହ କରି ଆଣିଲେ ମା ଓ ଝିଅ ଖାଆନ୍ତି।

ଅନ୍ଧୁଣୀ ବୁଢି ଅସୁରୁଣୀ ଯେତେବେଳେ ଏହି କୁନିକୁନି ପିଲାଙ୍କ ପାଟି ଶୁଣିପାରିଲା ତା ପାଟିରୁ ଲାଳ ଗଡିବାକୁ ଲାଗିଲା। ପିଲାମାନେ ଏହି ବୁଢିକୁ ନିଆଁ ଦେବାକୁ କହିଲେ। ବୁଢି ଅସୁରୁଣୀ ଗୋଟିଏ ଉପାୟ ପାଞ୍ଚିଲା। ପିଲାମାନଙ୍କୁ ନିଆଁ ଦେବାକୁ କହି ସେଠାରେ ଥିବା ଏକ ସୁଡ଼ଙ୍ଗ ଭିତରକୁ ପଠେଇ ଦେଲା। ସେଠାରେ ନିଆଁ ଅଛି ବୋଲି କହି ବୁଢି ଅସୁରୁଣୀ ଚତୁରତାର ସହ ପିଲାମାନଙ୍କୁ ସେହି ସୁଡ଼ଙ୍ଗ ଭିତରକୁ ପଠେଇଦେଲା। ପିଲାମାନେ ନିଆଁ ପାଇଁ ସୁଡ଼ଙ୍ଗ ଭିତରକୁ ପଶିଗଲା ପରେ ସେଠାରୁ ଆଉ ବାହାରି ଆସି ପାରିଲେ ନାହିଁ। କାନ୍ଦିବାକୁ ଲାଗିଲେ। ଏହା ଶୁଣି ଅନ୍ଧ ବୁଢି ଅସୁରୁଣୀ ପିଲାମାନଙ୍କୁ କହିଲା: ଥାଅ, ଥାଅ ସେଇଠି। ଆଉ ଅଧଘଣ୍ଟା ପରେ ଝିଅ ଆସିଲେ ତମକୁ ଖାଇ ଆମେ ଭୋକିଲା ମା, ଝିଅ ଦିହେଁ ଶାନ୍ତି ହେବୁ। ଏହା ଶୁଣି ପିଲାମାନେ ବଡ଼ ପାଟିରେ କାନ୍ଦିବାକୁ ଲାଗିଲେ।

କିଛି ସମୟ ଗଲାପରେ ଏହି ପାଞ୍ଚ ଜଣ ପିଲା ନ ଆସିବାରୁ ବୁଢା ପୁଣି ଆଉ ପାଞ୍ଚ ଜଣ ପିଲାଙ୍କୁ ସେହି ଦିଗକୁ ପଠେଇଲା। ଏହି ପାଞ୍ଚ ଜଣ ପିଲା ପ୍ରଥମ ପାଞ୍ଚ ଜଣ ପିଲାଙ୍କ ଭଳି ସେହି ବୁଢି ଅସୁରୁଣୀ ହାବୁଡରେ ପଡି ପୁଣି ସେହି ଅନ୍ଧାରୀ ସୁଡ଼ଙ୍ଗ ଭିତରକୁ ପଶିଗଲେ ଓ ବାହାରି ପାରିଲେ ନାହିଁ। ଏମିତି ଏମିତି ପାଞ୍ଚ ପାଞ୍ଚ ଜଣ କରି ସବୁ ପିଲା ଏହି ବୁଢି ଅସୁରୁଣୀ ହାବୁଡରେ ପଡିଗଲେ। ସମସ୍ତ ୨୫ ଜଣ ପିଲା ସେହି ଅନ୍ଧାରି ସୁଡ଼ଙ୍ଗ ଭିତରେ ପଶି ଆଉ ବାହାରି ପାରିଲେ ନାହିଁ। ଏଣେ ବୁଢି ପାଟିରୁ ଖାଲି ଲାଳ ବାହାରୁଥାଏ। କେତେବେଳେ ଝିଅ ଫେରିବ ଏମାନଙ୍କୁ ଖାଇ ଶାନ୍ତିରେ ଘୁଙ୍ଗୁଡି ମାରିବ ବୁଢି ଚିନ୍ତାରେ ମଗ୍ନ ହୋଇ ପଡିଥାଏ।

ଏଣେ ଅତ୍ୟଧିକ ବିଳମ୍ବ ହେବାରୁ ବୁଢା ମନରେ ସନ୍ଦେହ ହେଲା। ସବୁ ପିଲା ଯାଇ କେହିବି ଜଣେ ହେଲେ ନ ଫେରିବାରୁ ବୁଢା ବ୍ୟସ୍ତ ହୋଇ ପଡିଲା। ପିଲାମାନଙ୍କୁ ଖୋଜିବାକୁ ନିଜେ ବୁଢା ବାହାରିଗଲା। ସେ ଯାଇ ଦେଖିଲା ବୁଢି ଅସୁରୁଣୀ ପୂର୍ବ ପରି ଚୂଲି ପାଖରେ ବସି ନିଆଁ ଜାଳୁଛି। ବୁଢା ପିଲାମାନଙ୍କ ସମ୍ପର୍କରେ ପଚାରିବାରୁ ବୁଢି ଅସୁରୁଣୀ ତାକୁ ସେହି ସୁଡ଼ଙ୍ଗ ଦେଖେଇ ଦେଲା ଓ କହିଲା ପିଲାମାନେ ସେହି ସୁଡ଼ଙ୍ଗରେ ଖେଳୁଛନ୍ତି। ବୁଢା ସେଇଟୁ ସୁଡ଼ଙ୍ଗ ଭିତରକୁ ଚାଲିଗଲା ଏବଂ ଦେଖିଲା ପିଲାମାନେ ସେଠାରେ ପଶି କାନ୍ଦୁଛନ୍ତି ଓ ବାହାରକୁ ଆସି ପାରୁନାହାନ୍ତି।

ବୁଢାକୁ ଦେଖି ପିଲାମାନେ ଭେମା ରଡି ଛାଡିଲେ ଓ କାନ୍ଦିଲେ। କହିଲେ ଅକା, ଆମକୁ ଏଠାରୁ ଶୀଘ୍ର ଉଦ୍ଧାର କର। ନଚେତ୍ ଅସୁରୁଣୀ ବୁଢିର ଝିଅ ଆସିଲେ ଆମ ସମସ୍ତଙ୍କୁ ଖାଇଦେବ। ବୁଢା କ'ଣ କରିବ ବୋଲି ଘଡିଏ ଚିନ୍ତା କଲା। ସେଇଟୁ ତାର କୁହୁକ ଧୁଣ୍ଡି ବାହାର କଲା ଏବଂ ସବୁ ପିଲାଙ୍କୁ ଏହା ଭିତରେ ପଶିଯିବାକୁ କହିଲା। ବୁଢା ସବୁ ପିଲାମାନଙ୍କୁ ମନ୍ତ୍ର ବଳରେ ତାର କୁହୁକ ଧୁଣ୍ଡି ଭିତରେ ପୂରେଇ ଦେଇ ସୁଡ଼ଙ୍ଗରୁ ଚତୁରତାର ସହ ବାହାରି ଆସିଲା। ଅନ୍ଧୁଣୀ ଅସୁରୁଣୀ ବୁଢି ଏ ସମ୍ପର୍କରେ କିଛି ହେଲେ ଜାଣି ପାରିଲା ନାହିଁ। ବୁଢା ସିନା ସେହି ସୁଡ଼ଙ୍ଗ ଭିତରୁ ବାହାରି ଆସିଲା କିନ୍ତୁ କିଛି ବାଟ ଯାଇଛି କି ନାହିଁ ବୁଢାଟି ପୁଣି ଏକ ବାଘ ଗୁମ୍ଫା ଭିତରକୁ ପଶିଗଲା। ଅସୁରୁଣୀ ଭୟରେ ସେହି ଗୁମ୍ଫାରେ ବୁଢା ଓ ପିଲାମାନେ କିଛି ସମୟ ଲୁଚିକି ରହିଲେ। ଭାଗ୍ୟ ଭଲ, ସେଠାରେ ସେତେବେଳେ ବାଘ ନଥିଲା।

ଏହି ସମୟରେ ବୁଢି ଅସୁରୁଣୀର ଝିଅ ଘରକୁ ଫେରିଲା। ଆଜି ତାକୁ ଗୋଟିଏ ହେଲେ ଶିକାର ମିଳି ନଥିବାରୁ ମନ ଦୁଃଖରେ ଘରକୁ ଫେରିଛି। ବୁଢି ଅସୁରୁଣୀ ଝିଅକୁ ଖ'ଣ ଖାଇବାକୁ ଆଣିଛି ବୋଲି ପଚାରିବାରୁ ଝିଅ କହିଲା: କିଛି ଆଣିନାହିଁ। ବୁଢି ଅସୁରୁଣୀ ଝିଅକୁ କହିଲା: ବ୍ୟସ୍ତ ହଅନା ଲୋ ଝିଅ, ଆମ ପାଇଁ ଆଜି ମାସକର ଖାଦ୍ୟ ମିଳିଯାଇଛି। ସେଇ ସୁଡ଼ଙ୍ଗ ଭିତରକୁ ଚାଲିଯା। ସେଠାରେ ବହୁତ ପିଲା ଓ ଗୋଟିଏ ବୁଢା ଅଛି। ପନିକିରେ କାଟି ସେମାନଙ୍କୁ ଖାଇବା ଚାଲ। କିନ୍ତୁ ଅସୁରୁଣୀ ଝିଅ ସୁଡ଼ଙ୍ଗ ଭିତରକୁ ଯାଇ ଦେଖିଲା ବେଳକୁ ସୁଡ଼ଙ୍ଗ ଭିତରେ କେହି ନାହାନ୍ତି। ସେଠାରୁ ଆସି ମାକୁ ପଚାରିଲା: କାହିଁ ସୁଡ଼ଙ୍ଗରେ କେହି ନାହାନ୍ତି ତ! ବୁଢି ଅସୁରୁଣୀ ଝିଅକୁ ସଙ୍ଗେସଙ୍ଗେ ସେମାନଙ୍କୁ ପିଛା କରିବାକୁ କହିଲା। ଅସୁରୁଣୀ ଝିଅ ଆଉ ଡେରି ନକରି ସେମାନଙ୍କୁ ପିଛା କଲା। ମଣିଷ ବାସ୍ନା ଶୁଙ୍ଘି ଶୁଙ୍ଘି ଅସୁରୁଣୀ ଝିଅ ଗୁମ୍ଫା ନିକଟରେ ପହଞ୍ଚିଗଲା। ଗୁମ୍ଫା ଭିତରକୁ ପଶିବାକୁ ଯାଉଛି ଏହି ସମୟରେ ବାଘ ଆସି ପହଞ୍ଚିଗଲା। ଗୁମ୍ଫା ଭିତରେ ସେତେବେଳେ ବୁଢା ଓ ପିଲାମାନେ ରହିଥିଲେ। ଏହି ସମୟରେ ବାଘ ପହଞ୍ଚିଯିବାରୁ ଅସୁରୁଣୀ ଝିଅ ସହିତ ତାର ଘମାଘୋଟ ଲଢେଇ ହେଲା। ବୁଢା ଓ ପିଲାମାନେ ଗୁମ୍ଫା ମଧ୍ୟରେ ରହି ଉଭୟଙ୍କ ଲଢେଇ ଦେଖୁଥିଲେ।

ଅସୁରୁଣୀ ଝିଅ ବାଘକୁ ଧରିବାକୁ ଚେଷ୍ଟା କରୁଥିଲା, ବାଘ ତା ହାତକୁ କାମୁଡି ଦେଲା। ଅସୁରୁଣୀ ଝିଅ ଯନ୍ତ୍ରଣାରେ ଏତେ ଜୋର୍‌ରେ ଚିତ୍କାର କଲା, ଯେ ଗୁମ୍ଫାଟି ଦୋହଲି ଗଲା। ପିଲାମାନେ ଏହି ଶବ୍ଦରେ ଭୟରେ ହାଉଳି ଖାଇଗଲେ। ବୁଢା ଭାବିଲା, ଅସୁରୁଣୀ ଓ ବାଘ ମଧ୍ୟରୁ ଯିଏ ବି ବଞ୍ଚି ରହିବ ତାଙ୍କ ପାଇଁ କାଳ। ଏଣୁ ଉଭୟ ମରିବା ଉଚିତ୍। ଉଭୟ ମରିଲେ ଯାଇ ବୁଢା ଓ ପିଲାମାନେ ସେମାନଙ୍କ କବଳରୁ ମୁକ୍ତି ପାଇବେ।

ଏଣୁ ବୁଢା ପୂର୍ବରୁ ଜଳାଶୟରୁ ଯେଉଁ ପାଣିତକ ପିଇଥିଲା ତାହାକୁ ଅତି କ୍ଷୀପ୍ର ଗତିରେ ବାଘ ଓ ଅସୁରୁଣୀ ଝିଅ ଆଡକୁ ଛାଡିଲା। ବୁଢା ପାଟିରୁ ଏତେ ପାଣି ବାହାରିଲା ଯେ ଉଭୟ ବାଘ ଓ ଅସୁରୁଣୀ ଝିଅ ସେହି ପାଣି ସୁଅରେ କେଉଁ ଆଡକୁ ଭାସି ଗଲେ। କିଛି ସମୟ ପରେ ବୁଢା ଦେଖିଲା, ସେଠାରେ ଅସୁରୁଣୀ ଝିଅ କି ବାଘ ନାହିଁ। ସେମାନେ ପାଣି ସୁଅରେ କେଉଁ ଆଡକୁ ଭାସି ଯାଇଛନ୍ତି। ଏହି ସମୟରେ ଆଉ ଡେରି ନକରି ବୁଢା ପିଲାମାନଙ୍କୁ ଧରି ସେହି ଗୁମ୍ଫାରୁ ବାହାରି ଗାଁ ଆଡେ ଚାଲିଲେ। କିଛି ଦିନ ପରେ ଯାଇ ବୁଢା ପିଲାମାନଙ୍କୁ ଧରି ଗାଁରେ ପହଞ୍ଚିଲେ। ଏତେ ଦିନ ବିତିଯାଇଥିବାରୁ ଗାଁ ଲୋକେ ଭାବିଲେ ବୁଢା ଓ ପିଲାମାନେ ମରି ଯାଇଥିବେ। ତେଣୁ ଗାଁ ଲୋକେ ନଦୀ ତୁଠକୁ ଶୁଦ୍ଧକ୍ରିୟା ନିମନ୍ତେ ଯାଇଥିଲେ। ସେତିକିବେଳେ ବୁଢା ଏକ ଧୁଣ୍ଡି ଧରି ଗାଁକୁ ଫେରୁଥିଲା। ବୁଢା ଏକଲା ଫେରୁଥିବା ଦେଖି ଗାଁ ଲୋକେ ପିଲାମାନେ କୁଆଡେ ଗଲେ ବୋଲି ପଚାରିଲେ। ବୁଢା ଧୁଣ୍ଡିକୁ ତଳେ ଥୋଇଲା ଏବଂ ସେଥିରୁ ପିଲାମାନଙ୍କୁ ଗୋଟିଏ ପରେ ଗୋଟିଏ ବାହାର କଲା ଏବଂ ସମସ୍ତ ବୃତ୍ତାନ୍ତ ଗାଁ ଲୋକଙ୍କ ଆଗରେ ବଖାଣିଲା। ପିଲାମାନଙ୍କୁ ଦେଖି ଗାଁ ଲୋକେ ଖୁସି ହୋଇଗଲେ ଏବଂ ବୁଢାର ବାହାଦୂରୀକୁ ତାରିଫ୍ କଲେ।





ଚଣା କିଏ ଖାଉଛି ଜାଣିବା ପାଇଁ ଚାଷୀଟି ଥରେ ରାତିରେ ଆସି ନିଜ ଜମି ନିକଟରେ ଜଗି ରହିଲା । ରାତି ବେଳକୁ ବେଳ ଘନ ହେଉଥାଏ । ଯେମିତି ରାତି ଅଧିକ ହୋଇଛି, ଆକାଶ ମାର୍ଗରୁ ଏକ ଶବ୍ଦ ସୃଷ୍ଟି ହେଲା । ଚାଷୀ ଏହି ଶବ୍ଦ ପ୍ରତି କାନେଇଲା ।

ଆକାଶ ମାର୍ଗରୁ ଏକ ଉଡ଼ନ୍ତା ହାତୀ ଆସି ଚଣା କିଆରିରେ ଓହ୍ଲାଇଲା । ଚଣା କିଆରିରେ ଉଡ଼ନ୍ତା ହାତୀଟି ଓହ୍ଲାଇ ଚଣା ଖାଉଥିବାର ଚାଷୀଟି ଦେଖିଲା । ତେଣୁ ତାକୁ ଆଉ ବୁଝିବାକୁ ବାକି ରହିଲାନି ଯେ, ଏହି ଉଡ଼ନ୍ତା ହାତୀଟିହିଁ ସବୁ ଚଣା ଖାଇ ଯାଉଛି ।

ହାତୀଟି ଚଣା ଖାଇବାରେ ଲାଗିଥାଏ । ଚାଷୀଟି ଛପି ଛପି ଯାଇ ହାତୀର ଲାଞ୍ଜକୁ ଧରି ପକେଇଲା । ଚାଷୀ ତାର ଲାଞ୍ଜକୁ ଧରିଥିବା କଥା ହାତୀଟି କିନ୍ତୁ କିଛି ଜାଣି ପାରି ନଥିଲା । ହାତୀ ଚଣା ଖାଇ ସାରି ପୁଣି ଆକାଶ ମାର୍ଗକୁ ଉଡିଗଲା । ହାତୀ ଯାଇ ସ୍ୱର୍ଗରେ ପହଞ୍ଚିଲା । ସ୍ୱର୍ଗରେ ପହଞ୍ଚି ଦେଖିଲା ବେଳକୁ ତା ଲାଞ୍ଜରେ ଜଣେ ମଣିଷ ଝୁଲିଛି ।

ଏହା ଦେଖି ହାତୀଟି ଚାଷୀକୁ ପଚାରିଲା: ତୁ କିଏ ଏବଂ କାହିଁକି ମୋ ଲାଞ୍ଜରେ ଏମିତି ଓହଳି ରହିଛୁ ?

ହାତୀର କଥା ଶୁଣି ଚାଷୀ କହିଲା: ମୁଁ ଗରିବ ଲୋକ ଆଜ୍ଞା, ତମେ ମୋ ଚାଷ ଖାଇଗଲ। ଏବେ ମୁଁ କରିବି କ'ଣ ଓ ମୋ ପରିବାର କେମିତି ପୋଷାହେବ । ମୁଁ କେମିତି ଓ କ'ଣ ଖାଇ ବଞ୍ଚିବି ? ତେଣୁ ମୁଁ ତମ ଲାଞ୍ଜ ଧରି ତମ ସାଙ୍ଗରେ ଚାଲି ଆସିଲି । ତେଣିକି ମୋତେ ମାରିଲେ ମାରିବ, ରଖିଲେ ରଖିବ ତମ ଇଛା କହି ଚାଷୀଟି କାନ୍ଦିବାକୁ ଲାଗିଲା ।

ଏହା ପରେ ହାତୀଟି ତାକୁ ପାଖକୁ ଡାକିଲା । ହାତୀଟି ସଙ୍ଗେସଙ୍ଗେ ଚାଷୀଟିକୁ କିଛି ସୁନା, ଟଙ୍କା, ଧନ ଦେଇ କହିଲା, ଏ ସୁନା, ଟଙ୍କାରେ ତମେ ପୀଢି ପରେ ପୀଢି ଆରାମରେ ଚଳିବ ଏବଂ ତମର ଆଉ ଅଭାବ ରହିବ ନାହିଁ। ହାତୀଟି ଚାଷୀକୁ ସୁନା, ଟଙ୍କା, ଧନ ଦେଇ ନିଜେ ପୁଣି ଆସି ତା ଘର ନିକଟରେ ଛାଡି ଦେଇ ପୁଣି ସ୍ୱର୍ଗକୁ ଫେରିଗଲା ।

ସ୍ୱର୍ଗକୁ ଫେରିଯିବାର ପୂର୍ବରୁ ହାତୀଟି ଚାଷୀକୁ କହିଲା: ବ୍ୟସ୍ତ ହେବନି, ମୁଁ ମଝିରେ ମଝିରେ ତମ କିଆରିକୁ ଚଣା ଖାଇବାକୁ ଆସିବି ଏବଂ କିଛି ଅଭାବ ଅସୁବିଧା ପଡିଲେ ମୋତେ ଜଣାଇବ। ମୁଁ ତମର ଅସୁବିଧା ଦୂର କରିବି। ଏହା କହି ହାତୀଟି ପୁଣି ଆକାଶ ମାର୍ଗକୁ ଉଡିଗଲା । କିଛି ଦିନ ଗଲା । ଚାଷୀଟି ଆଉ ପୂର୍ବ ଭଳି ଗରିବ ନଥିଲା ।

ଚାଷୀଟି ହଠାତ୍ ଧନୀ ହୋଇଗଲା । ଗାଁ ଲୋକେ ଏହାର କିଛି ରହସ୍ୟ ଜାଣି ପାରିଲେ ନାହିଁ। ଚାଷୀଟି ହଠାତ୍ ସାଉକାର୍ କେମିତି ହୋଇଗଲା । ଚାଷୀଟି କେମିତି ଧନୀ ହୋଇଗଲା ଗାଁ ଲୋକେ ଏହାର ରହସ୍ୟ ଜାଣିବାକୁ ଚାହିଁଲେ। ଚାଷୀଟି ସମସ୍ତ ବୃତ୍ତାନ୍ତ ଗାଁ ଲୋକଙ୍କ ନିକଟରେ ଗପିଲା ।

ଚାଷୀଟି ସାଉକାର୍ ହୋଇଯିବା ପରେ ମଧ୍ୟ ତାର ଆଉ ଧନ ପାଇଁ ଲୋଭ ବଳିଲା ।

ସେ ହାତୀଠାରୁ ଆଉ ଧନ ଆଣିବା ପାଇଁ ମନେମନେ ଚିନ୍ତା କରୁଥିଲା । ଏହି ସମୟରେ ଗାଁ ଲୋକେ ଚାଷୀଟିକୁ ସେମାନଙ୍କୁ ମଧ୍ୟ ଉଡ଼ନ୍ତା ହାତୀ ଦେଖେଇ ଦେବାକୁ କହିଲେ। ଚାଷୀ କହିଲା ଆସନ୍ତାକାଲି ରାତିରେ ହାତୀ ପୁଣି ଆସିବ, ଆମେ କ୍ଷେତ ନିକଟରେ ଜଗି ବସିଥିବା। ହାତୀଟି ଆସିଲେ ଆମେ ତା ଲାଞ୍ଜ ଧରି ଓହଳି ପଡିବା ଏବଂ ତା ସାଥୀରେ ସ୍ୱର୍ଗକୁ ଯିବା। ସ୍ୱର୍ଗକୁ ଗଲା ପରେ ହାତୀ ଆମକୁ ଆଉ ଧନ ଦେବ। ଚାଷୀଟିର କହିବା ଅନୁସାରେ ରାତିରେ ଗାଁ ଲୋକେ ଓ ଚାଷୀ ବିଲରେ ଜଗି ବସିଲେ।

ହାତୀଟି ପୁଣି ବିଲକୁ ଚଣା ଖାଇବାକୁ ଆସିଲା । ହାତୀଟି ଚଣା ଖାଇ ଉଡିଯିବାକୁ ଉଦ୍ୟତ ହେଉଥିବାବେଳେ ଚାଷୀଟି ଦଉଡି ଦଉଡି ଯାଇ ହାତୀର ଲାଞ୍ଜକୁ ଧରି ପକେଇଲା। ଏହା ପରେ ଗାଁ ଲୋକମାନେ ବିକଳ ହୋଇ ପଡିଲେ ସ୍ୱର୍ଗକୁ ଯିବା ପାଇଁ। ସେମାନଙ୍କ ମଧ୍ୟରୁ ଜଣେ ହାତୀ ଲାଞ୍ଜ ଧରି ଓହଳି ରହିଥିବା ଚାଷୀର ଗୋଡକୁ ଧରି ପକେଇଲା । ଆଉ ଜଣେ ତାର ଗୋଡକୁ ଧରିଲା , ଆଉ ଜଣେ ତାର ଗୋଡକୁ ଧରିଲା । ଏମିତି ଏମିତି ଜଣକ ଗୋଡକୁ ଜଣେ ଧରି ସମସ୍ତେ ଆକାଶ ମାର୍ଗରେ ଉଡିଲେ। କ୍ରମଶଃ ହାତୀଟି ସ୍ୱର୍ଗ ଅଭିମୁଖେ ଯାତ୍ରା କରୁଥାଏ। ସ୍ୱର୍ଗ ଆଉ ଅଳ୍ପ ବାଟ ବାକି ଥାଏ।

ଏହି ସମୟରେ ଜଣେ ଲୋକ ଚାଷୀକୁ କହିଲା : ଆମେ ସ୍ୱର୍ଗକୁ ଗଲା ପରେ ହାତୀକୁ ଆମେ କେତେ ଧନ ମାଗିବା ? ଚାଷୀଟି ସଙ୍ଗେସଙ୍ଗେ ଦୁଇ ହାତକୁ ଦେଖେଇ କହିଲା : ଏତେ ମାଗିବା। ଏହି ସମୟରେ ହାତ ଦୁଇଟି ଛାଡି ଦେଇଥିବାରୁ ଚାଷୀଟି ଆକାଶର ତଳକୁ ଗଳି ପଡିଲା ଏବଂ ସମସ୍ତେ ଚାଷୀଟି ସହିତ ତଳକୁ ଖସି ପଡି ମରିଗଲେ। ଚାଷୀ ଓ ଗାଁ ଲୋକେ ଅଧିକ ଲୋଭ କରିବାରୁ ତାର ଫଳ ଭୋଗିଲେ।







# ବୁଢ଼ାବୁଢ଼ି

(କୋରାପୁଟ, ପରଜା ଲୋକ କଥା)

ବୁଢ଼ାଟିଏ। ବୁଢିଟିଏ। ପିଲାଝିଲା କେହି ନାହାଁନ୍ତି। ଦୁଇ ପ୍ରାଣୀ ବେଶ୍ ଆନନ୍ଦରେ ହସଖୁସିରେ ଜୀବନ କାଟୁଥିଲେ। ତାଙ୍କର ଗୋଟିଏ ପୋଷା କୁକୁର ଥିଲା। ପୁଅଠାରୁ ଅଧିକ ଯତ୍ନ କରୁଥିଲେ ବୁଢାବୁଢି।

କୁକୁରଟି ମଧ୍ୟ ବୁଢାବୁଢିକୁ ଘଣ୍ଟାଏ ନ ଦେଖିଲେ କେଉଁଠି ବି ରହିପାରେନା। ବୁଢା, ବୁଢି ମିଶିକରି ଜଙ୍ଗଲକୁ ଶିକାର କରି ଯାଆନ୍ତି। ତାଙ୍କ ସାଙ୍ଗରେ କୁକୁର ଯାଏ।



# ଲିଟିଂପିଟିଂ

(କୋରାପୁଟ, ପରଜା ଲୋକ କଥା)

ଗୋଟିଏ ଲିଟି ଚଢ଼େଇ ରହୁଥିଲା । ସେ ଖୁସିରେ ଲିଟିଂପିଟିଂ କରି ଗୀତ ଗାଉଥିଲା । ଗାଁ ମୁଣ୍ଡର ଶର୍ଗି ଗଛରେ ବସାଟିଏ କରିଥିଲା । ସେ ଚାରୋଟି ଅଣ୍ଡା ଦେଇଥିଲା ।

ଦିନେ ସକାଳୁ ସେହି ବାଟ ଦେଇ ଦଳେ ପିଲା ଯାଉଥିଲେ । ପିଲାମାନେ ଗଛରେ ଚଢ଼େଇଟିର ବସା ଦେଖି ଖୁସିରେ ନାଚି ଉଠିଲେ । ସେମାନେ ଯାଇ ବସାଟିରୁ ଅଣ୍ଡାତକ

ନେଇ ଆସିଲେ। ଲିଟି ଚଢ଼େଇ ଛୁଆମାନଙ୍କୁ ଦେଖି କେବଳ ଲିଟିଂପିଟିଂ କରି ବୋବେଇଲା ଓ କାନ୍ଦିଲା। ଏହା ଦେଖି ଅଣ୍ଡା ଭିତରେ ଥିବା ଛୁଆମାନେ ସେମାନଙ୍କର ମାକୁ କହିଲେ: ମା, ମା, ଆମକୁ ଏ ଦୁଷ୍ଟ ପିଲାମାନେ ନେଇ ଯାଉଛନ୍ତି। ଆମକୁ ରକ୍ଷା କର।

ଲିଟି ଚଢ଼େଇ କହିଲା: ଲିଟିଂପିଟିଂ ମୁଁ କ'ଣ କରିବି ପିଲାମାନେ। ବାଟରେ ତ ଘର କରିଛି। ସେମାନେ ତମମାନଙ୍କୁ ନେଇ ଯାଉଛନ୍ତି। ମୁଁ ତମକୁ ଉଦ୍ଧାର କରିପାରୁନି। ଲିଟି ଚଢ଼େଇ କେବଳ ଲିଟିଂପିଟିଂ କରି କାନ୍ଦିଲା।

ଏହା ପରେ ଦୁଷ୍ଟ ପିଲାମାନେ ଅଣ୍ଡାଗୁଡିକୁ ନେଇ ଭାଙ୍ଗି ଦେଲେ।

ଚଢ଼େଇ ଛୁଆମାନେ ବଡ଼ ପାଟିରେ ସେମାନଙ୍କ ମା ଉଦ୍ଦେଶ୍ୟରେ କହିଲେ: ମା, ମା ଆମକୁ ଏ ଦୁଷ୍ଟ ପିଲାମାନେ ତଳେ ପକେଇ ଭାଙ୍ଗି ପକେଇଲେ।

ଲିଟି ଚଢ଼େଇ କହିଲା: ଲିଟିଂପିଟିଂ। ମୁଁ କ'ଣ କରିବି ପିଲାମାନେ। ବାଟରେ ତ ଘର କରିଛି। ସେମାନେ ତମମାନଙ୍କୁ ତଳେ ପକେଇ ଦେଉଛନ୍ତି। ମୁଁ କିଛି କରି ପାରୁନି। ଲିଟି ଚଢ଼େଇ କେବଳ ଲିଟିଂପିଟିଂ କରି କାନ୍ଦିଲା।

ଏହା ପରେ ଦୁଷ୍ଟ ପିଲାମାନେ ଚଢ଼େଇ ଛୁଆମାନଙ୍କୁ ପନିକିରେ କାଟି ପକେଇଲେ।

ଚଢ଼େଇ ଛୁଆମାନେ ସେମାନଙ୍କ ମାକୁ ପୁଣି କହିଲେ: ମା, ମା ଏ ଦୁଷ୍ଟ ପିଲାମାନେ ଆମକୁ କାଟି ପକେଇଲେ।

ଲିଟି ଚଢ଼େଇ କହିଲା: ଲିଟିଂପିଟିଂ ମୁଁ କ'ଣ କରିବି ପିଲାମାନେ। ବାଟରେ ତ ଘର କରିଛି। ସେମାନେ ତମମାନଙ୍କୁ କାଟି ଦେଉଛନ୍ତି। ଲିଟି ଚଢ଼େଇ କେବଳ ଲିଟିଂପିଟିଂ କରି କାନ୍ଦିଲା।

ଏହାପରେ ଦୁଷ୍ଟ ପିଲାମାନେ କଟା ଚଢ଼େଇ ଛଆମାନଙ୍କର ମାଂସକୁ ନେଇ ଚୁଲିରେ ରାନ୍ଧିବାକୁ ଗଲେ।

ଏହା ଦେଖି ଚଢ଼େଇ ଛୁଆମାନେ ପୁଣି ସେମାନଙ୍କ ମାକୁ ଡାକିଲେ ଓ କହିଲେ: ମା, ମା, ଏହି ପିଲାମାନେ ଆମକୁ ନେଇ ରାନ୍ଧିଲେଣି।

ଲିଟି ଚଢ଼େଇ କହିଲା: ଲିଟିଂପିଟିଂ। ମୁଁ କ'ଣ କରିବି ପିଲାମାନେ। ବାଟରେ ତ ଘର କରିଛି। ସେମାନେ ତମମାନଙ୍କୁ ନେଇ ରାନ୍ଧୁଛନ୍ତି। ଅଥଚ ମୁଁ କିଛି କରି ପାରୁନି। ଲିଟି ଚଢ଼େଇ କେବଳ ଲିଟିଂପିଟିଂ କରି କାନ୍ଦିଲା।

ଚଢ଼େଇ ଛୁଆମାନଙ୍କ ମାଂସ ରାନ୍ଧିଲା ପରେ ମାଂସ ବାସ୍ନାରେ ପିଲାମାନେ ଖାଇବାକୁ ତରତର ହୋଇ ପଡିଲେ। ପିଲାମାନେ ଶର୍ଗି ପତ୍ରରେ ରନ୍ଧା ଯାଇଥିବା ମାଂସ ତର୍କାରୀ ବାଢିଲେ ଓ ଖାଇବାକୁ ଲାଗିଲେ।

ଚଢ଼େଇ ଛୁଆମାନେ ଏଥର ପିଲାମାନଙ୍କ ପେଟକୁ ଚାଲିଗଲେ ଏବଂ ସେମାନଙ୍କ ପେଟ ମଧ୍ୟରେ ଥାଇ ସେମାନେ ପୁଣି ମାକୁ ଡାକିଲେ ଏବଂ କହିଲେ: ମା , ମା , ଏ ଦୁଷ୍ଟ ପିଲାମାନେ ଆମକୁ ଶେଷରେ ଖାଇଦେଉଛନ୍ତି । ଆମକୁ ରକ୍ଷା କର ।

ପିଲାମାନଙ୍କର ଏମିତି କରୁଣ ଚିତ୍କାର ଶୁଣି ଲିଟି ଚଢ଼େଇ କହିଲା: ଲିଟିଂପିଟିଂ । ମୁଁ କ'ଣ କରିବି ପିଲାମାନେ । ବାଟରେ ତ ଘର କରିଛି । ସେମାନେ ତମମାନଙ୍କୁ ଖାଇ ଦେଉଛନ୍ତି । ମୁଁ କିଛି କରିପାରୁନି । ଲିଟି ଚଢ଼େଇ କେବଳ ଲିଟିଂପିଟିଂ କରି କାନ୍ଦିଲା । କାନ୍ଦି କାନ୍ଦି ଏପଟରୁ ସେପଟ ଉଡି ବୁଲିଲା ।

ଚଢ଼େଇ ଛୁଆମାନେ ପିଲାମାନଙ୍କ ପେଟରେ ଥାଇ ଖାଲି ବୋବେଇବାକୁ ଲାଗିଲେ । ପିଲାମାନଙ୍କ ପେଟରୁ ଏହି ଶବ୍ଦ ବାହାରୁଥିବାର ଶୁଣି ସେମାନଙ୍କର ମା' ମାନେ କାନ୍ଦିଲେ ଓ ଦିଶାରୀ ପାଖକୁ ନେଲେ । ସେଇଠୁ ପିଲାମାନେ ଆଉ ଚଢ଼େଇ ମାଂସ ନ ଖାଇବାକୁ ଶପଥ ନେଲେ ।







# ଲାଞ୍ଜ ଖଣ୍ଡି ବାଘ

(ନବରଙ୍ଗପୁର, ଭତରା ଲୋକ କଥା)

ଗୋଟିଏ ଗାଁରେ ବୁଢାଟିଏ ଥିଲା। ବୁଢିଟିଏ ଥିଲା। ସେମାନଙ୍କର ପିଲାପିଲି କିଛି ନଥିଲେ। ଚାଷବାସ କରି ମାମୁ ମାଇଁ ଦି'ପ୍ରାଣୀ ବେଶ୍ ଖୁସିରେ ଚଳୁଥିଲେ।

ବୁଢାର ବଣ ମଧ୍ୟରେ ବହୁତ ଡଙ୍ଗର ଜମି ଥିଲା। ସେହି ଡଙ୍ଗର ଜମି ବହୁତ ଉର୍ବରିଆ ଥିଲା। ପ୍ରତିବର୍ଷ ବୁଢା ସେଠି ଜନ୍ଧିରି ଚାଷ କରି ଚଳେ।

ଦିନେ ବୁଢା ଜମିରେ କାମ କରୁଥିବା ସମୟରେ କୁଆଡୁ ଏକ ଲାଞ୍ଜ ଖଣ୍ଡି ବାଘଟିଏ ଆସି ସେଠାରେ ପହଞ୍ଚିଲା। କହିଲା: ବୁଢା ମୁଁ ତତେ ଖାଇବି। ଆଜି ଦିନସାରା ମତେ କିଛି ଖାଇବାକୁ ମିଳିନି। ମୁଁ ବହୁତ ଭୋକିଲା ଅଛି। ପ୍ରକୃତରେ ବାଘଟି ଭୋକିଲା ଥିଲା।

ବୁଢାକୁ ଖାଇବା ନିଶ୍ଚିତ ହେବା ଜାଣି ବୁଢା ଭୟରେ ଥରିବାକୁ ଲାଗିଲା । ଏତିକି ବେଳେ ବୁଢା ମନକୁ ଏକ ପ୍ଲାନ୍ ଜୁଟିଲା ।

ବୁଢା କହିଲା: ବୁଝିଲୁ ବାଘ ପୁଅ, ମୋତେ ଖାଇବୁ ସତ, ମନା ନାହିଁ । କିନ୍ତୁ ମୋତେ ଏହି ଅବସ୍ଥାରେ ଖାଇଲେ ତୁ ବିଚରା କିଛି ଲାଭ ପାଇବୁ ନାହିଁ। କାରଣ ମୁଁ ବର୍ତ୍ତମାନ ଅତ୍ୟନ୍ତ ଦୁର୍ବଳ ଓ ମୋ ଶରୀରରେ ମାଂସ ପୁଳେ ବୋଲି ନାହିଁ। ଖାଲି ହାଡୁଆ ଦେହକୁ ଖାଇ ତୁ କି ଲାଭ ପାଇବୁ। ବରଂ ଗୋଟିଏ କଥା କର। ମୋତେ ଏବେ ନ ଖାଇ ଗୋଟିଏ ମାସ ପରେ ଖାଇବୁ। ସେତେବେଳକୁ ମୁଁ ଖାଦ୍ୟ ଖାଇ ଅଧିକ ମୋଟା ହୋଇଯାଇଥିବି। ଏହି ମାସକ ମଧ୍ୟରେ ମୁଁ ଅଧିକରୁ ଅଧିକ କୁକୁଡ଼ା, ଛେଳି, ମେଣ୍ଢା ମାଂସ ଖାଇ ଅଧିକ ମୋଟା ହୋଇଯିବି । ତା ପରେ ଯାଇ ତୁ ମୋତେ ଖାଇବୁ । ସେତେବେଳେ ତୁ ମୋତେ ଖାଇଲେ ସିନା ତୋ ପେଟ ପୂରିବ, ଆତ୍ମା ଶାନ୍ତି ହେବ।

ବୁଢାର କଥା ବାଘର ମନକୁ ପାଇଲା । ମାତ୍ର ବୁଢାର ଏହି କଥାକୁ ବାଘର ବିଶ୍ୱାସ ହେଲାନି । ତେଣୁ ବାଘ ବୁଢାକୁ ସତ୍ୟ କରିବାକୁ କହିଲା ଏବଂ ବୁଢା ଠାକୁରଙ୍କୁ ସାକ୍ଷୀ ରଖି ବାଘ ନିକଟରେ ସତ୍ୟ କଲା । ଠିକ୍ ମାସକ ପରେ ସେ ଜଙ୍ଗଲକୁ ଆସିବ ଓ ବାଘ ତାକୁ ଖାଇବ ।

ବାଘ ବୁଢାର କଥାକୁ ବିଶ୍ୱାସ କରି ଜଙ୍ଗଲକୁ ଫେରିଗଲା ଓ ବୁଢା ମଧ୍ୟ ମନ ଦୁଃଖରେ ଘରକୁ ଫେରିଲା । ବୁଢାର ତ ମନ ଦୁଃଖ ହୋଇଥାଏ । ତେଣୁ ଘରକୁ ଫେରି ବୁଢା କାହାକୁ କିଛି ନ କହି ଚୁପ୍‌ଚାପ୍ ଶୋଇ ପଡିଲା ।

ବୁଢାର ଏପରି ଶୁଖିଲା ମୁହଁକୁ ଦେଖି ବୁଢି କ'ଣ ହୋଇଛି ବୋଲି ଜାଣିବାକୁ ଚାହିଁଲା । ବୁଢା ବେଶ୍ କିଛି ସମୟ ଗୁମ୍ ମାରି ପଡିରହି ବୁଢିକୁ ସବୁ ଘଟଣା ବର୍ଣ୍ଣନା କଲା । ବୁଢି ଏ କଥା ଶୁଣି ଟିକିଏ ମନ ଦୁଃଖ କଲା ଓ କିଛି ସମୟ ଗୁମ୍ ଖାଇ ବସିଲା । ଏହାର କିଛି ଗୋଟାଏ ସମାଧାନ ପନ୍ଥା ବାହାର କରିବାକୁ ବୁଢି ମନେମନେ ଚିନ୍ତା କଲା । ଏମିତି ମନ ଦୁଃଖରେ ନଖାଇ ନ ପିଇ ବୁଢାବୁଢି ଦିହେଁ ଶୋଇ ପଡିଲେ ।

ତହିଁ ପର ଦିନ ବୁଢି ମନରେ ଏକ ଉପାୟ ଜୁଟିଲା । ବୁଢି ବୁଢାକୁ କହିଲା: ମୋ ପାଇଁ ଚାରି ପାଞ୍ଚ ଖଣ୍ଡ ଶାଢି, କିରାସିନି ତେଲ, ଦିଆସିଲି ଓ ଦୁଇଟି କୁକୁଡା ଆଣିବ । ବୁଢା ବୁଢିର ଏହି କଥା ଶୁଣି ଭାବିଲା ବୁଢି ବୋଧେ ପାଗଳ ହୋଇଯାଇଛି । ତେଣୁ ସେ ହତାଶ ହୋଇ ଚୁପ୍‌ଚାପ୍ ବସି ରହିଲା । ବୁଢି ବୁଢାକୁ ଯୋଜନା ସମ୍ପର୍କରେ ବୁଝାଇଲା ।

ବୁଢିର ଯୋଜନାଟି ବୁଢାର ମନକୁ ପାଇଲା । ଏହା ମଧ୍ୟରେ ମାସେ ବିତିଗଲା । ବୁଢା ବୁଢି ପାଇଁ ଦୁଇଟି କୁକୁଡା ଓ ଶାଢି ଆଣି ଦେଲା । ଉଭୟ ବୁଢାବୁଢି ଜଙ୍ଗଲକୁ ଗଲେ ।

ବୁଢି ଜଙ୍ଗଲରୁ ଏକ ପୋଲା କାଠ ସଂଗ୍ରହ କରି ଆଣିଲା । ପୋଲା କାଠଟିର ଗୋଟିଏ ମୁଣ୍ଡ ଅଧିକ ଓସାରିଆ ହୋଇଥିବାବେଳେ ଅନ୍ୟ ପାର୍ଶ୍ୱଟି ଅଣଓସାରିଆ ଥିଲା । ବୁଢି ଏହି

କାଠ ନଳାକୁ ଆଣି ବିଲରେ ରଖିଲା । ସେହି ନଳି ଭିତରେ କୁକୁଡା ଦୁଇଟିକୁ ବାନ୍ଧି ଦେଲା ।

ବୁଢା ପଚାରିଲା ବୁଢିକୁ; ଏହି କାଠ ନଳାଟି ଆମର କି କାମରେ ଲାଗିବ । ବୁଢି କହିଲା; ବାଘ ଏହି କାଠ ନଳାରେ ପଶି ମରିବ ।

ବୁଢା କହିଲା; କେମିତି? ବୁଢି କହିଲା; ଏହି କାଠ ନଳା ମଧ୍ୟରେ କୁକୁଡାକୁ ଛାଡି ଦିଆଯିବ । ତୁମେ ବିଲରେ କାମ କରୁଥିବ । ବାଘ ଯେତେବେଳେ ତମକୁ ଖାଇବାକୁ କହିବ, ତମେ ସେତେବେଳେ ତାକୁ ଏହି କୁକୁଡାକୁ ଖାଇବାକୁ ଦେଖାଇବ । ସେ ଯେତେବେଳେ ଏହି କୁକୁଡାକୁ ଖାଇବାକୁ ନଳା ମଧ୍ୟକୁ ପଶିଯିବ, ସେତେବେଳେ ମୁଁ ଏହି ଶାଢି ଘୋଡେଇ ହୋଇ ସେଠାରେ ଛକି ବସିଥିବି । ସଙ୍ଗେସଙ୍ଗେ କାଠ ନଳାର ଓସାରିଆ ପାର୍ଶ୍ୱକୁ ଲୁଗା ବିଣ୍ଡା କରି ତାର ମୁହଁ ବନ୍ଦ କରିଦେବି । ବାଘଟି ତା ଭିତରେ ପଶିଗଲା ପରେ ମୁଁ କିରାସିନି ଢାଳି କାଠ ନଳାରେ ନିଆଁ ଲଗେଇ ଦେବି । ବାଘଟି ତା ଭିତରେ ପୋଡି ହୋଇ ମରିଯିବ ।

ବୁଢା, ବୁଢି ଏହି ଯୋଜନା ପ୍ରସ୍ତୁତ କରିବା ପରେ ବୁଢା ବିଲରେ କାମ କରିବାକୁ ଗଲା ଓ ବୁଢି କାଠ ନଳା ପାଖରେ ଲୁଚିକି ରହିଲା । ଏହି ସମୟରେ ଲାଞ୍ଜ ଖଣ୍ଡି ବାଘଟି ସେଠାରେ ଆସି ପହଞ୍ଚିଲା । ବୁଢା ସେତେବେଳେ ବିଲରେ କାମ କରୁଥାଏ । ବୁଢି ଲୁଗା ଘୋଡେଇ ଘାଡେଇ କାଠ ନଳା ପାଖରେ ଛକି ବସିଥାଏ ।

ବାଘ ଆସି କହିଲା: ବୁଢ଼ା ଆଜି ତତେ ମୁଁ ଖାଇବି । ପୂର୍ବର ଯୋଜନା ଅନୁଯାୟୀ ବୁଢା ବାଘକୁ କହିଲା ଆଜି ତୁ ମତେ ଖାଆନା । ଆଜି ତୋ ପାଇଁ ଦୁଇଟି ଭଲ କୁକୁଡା ରହିଛି । ଏହା କହି ବୁଢା ବାଘଟିକୁ କାଠ ନଳା ମଧ୍ୟରେ ଥିବା କୁକୁଡାକୁ ଦେଖେଇ ଦେଲା ।

ବାଘ ଡଉଲଡାଉଲ କୁକୁଡା ଦୁଇଟିକୁ ଦେଖି ପାଟିରୁ ତାର ଲାଳ ବୋହି ପଡିଲା । ବାଘ ଆଉ ଡେରି ନକରି ସେ ନଳା ମଧ୍ୟକୁ ପଶିଗଲା । ନଳାଟି ବାଘ ତୁଳନାରେ କମ୍ ଓସାର ଥିବାରୁ ବାଘକୁ ତା ଭିତରକୁ ପଶିବାକୁ କଷ୍ଟ ହେଲା । ବାଘ କଷ୍ଟେମଷ୍ଟେ ମୋଡିମାଡି ହୋଇ ନଳା ଭିତରକୁ ପଶିଗଲା । ନଳାର ଆର ପାର୍ଶ୍ୱ ଅଣ ଓସାର ଥିବାରୁ ବାଘଟି ଆଉ ନଳା ଭିତରକୁ ପଶି ପାରିଲା ନାହିଁ । ଏହି ସମୟରେ ବୁଢି ଚଅଟ୍ କିନା ଉଠି ଆସି ନଳାର ମୁହଁରେ ଲୁଗା ବିଣ୍ଡା ଦେଇଦେଲା । ବାଘଟି ସେହି କାଠ ନଳା ମଧ୍ୟରେ ପଶି ଚିତ୍କାର କଲା । ଗର୍ଜନରେ ଜଙ୍ଗଲ ଉଠିଲା ପଡିଲା । ଆଉ କାଳ ବିଳମ୍ବ ନକରି ବୁଢି କାଠ ନଳାରେ କିରାସିନି ଢାଳି ନିଆଁ ଲଗେଇ ଦେଲା । ବାଘଟି ପୋଡି ହୋଇ ତା ଭିତରେ ମରିଗଲା ଏବଂ ବୁଢା, ବୁଢି ଦୁହେଁ ଖୁସି ମନରେ ଘରକୁ ଫେରିଲେ ।





# ମହାଜନ ପତ୍ନୀ ଓ ହଳିଆର ପ୍ରେମ କାହାଣୀ

(ନବରଙ୍ଗପୁର, ଭତରା ଲୋକ କଥା)

ବହୁ ବର୍ଷ ତଳର ଘଟଣା । ଗୋଟିଏ ଗାଁରେ ଜଣେ ମହାଜନ ଥିଲା । ତାର ବହୁତ ଜମିବାଡ଼ି ଥିଲା । ସେ ତା ଜମିବାଡିରେ କାମ କରିବା ପାଇଁ ଜଣେ ହଳିଆ ରଖିଲା । କୁକୁରଟିଏ ମଧ୍ୟ ପୋଷିଲା ।

ହଳିଆଟି ଦେଖିବାକୁ କଳା ମୁଟ୍‌ମୁଟ୍ ଓ ଶକ୍ତସବଳ ଥିଲା । ମହାଜନ ସୁସ୍ଥ ସବଳ ହଳିଆଟିକୁ ଦେଖି ତାର ମନ ଆନନ୍ଦରେ ନାଚି ଉଠୁଥିଲା । କାରଣ ଏହି ସୁସ୍ଥ ସବଳ ହଳିଆଟି ବେଶ୍ ଭଲ କାମ କରି ପାରିବ ବୋଲି ମହାଜନ ଖୁସି ହେଉଥିଲା ।

ଏଣେ ହଳିଆ ପ୍ରତି ମହାଜନର ପତ୍ନୀର ଦୁର୍ବଳତା ଚାଲି ଆସିବାରୁ ସେମାନଙ୍କ ମଧ୍ୟରେ ଗୁପ୍ତ ପ୍ରଣୟ ଗଢି ଉଠିଲା ।

ହଳିଆ ଦିନେ ମହାଜନର ପତ୍ନୀ ସହିତ ଗୁପ୍ତ ପ୍ରଣୟରେ ମାତି ଉଠିଥିଲାବେଳେ କୁକୁର ଏହା ଦେଖିଦେଲା । ରାଗରେ କୁକୁର ବଡ଼ ପାଟିରେ ଭୁକିଲା ଓ ହଳିଆକୁ କାମୁଡି ଦେଲା । ହଳିଆ ମରିଗଲା । ମହାଜନର ପତ୍ନୀ ହଳିଆର ଶବକୁ ନେଇ ତା ବେକରେ ଦଉଡି ବାନ୍ଧି ଏକ ଗଛରେ ଓହଳାଇ ଦେଲା ଓ ବହୁତ କାନ୍ଦିଲା । ହଳିଆର ମୃତ୍ୟୁ ହୋଇଯିବାରୁ ମହାଜନର ପତ୍ନୀ ବିରହରେ ଦିନକୁ ଦିନ କଷ୍ଟ ହୋଇଗଲା । ପ୍ରତି ଦିନ ମହାଜନର ପତ୍ନୀ ହଳିଆର ଶବକୁ ଦେଖିବାକୁ ଯାଏ । କିଛି ଦିନ ପରେ ସେହି ଶବଟି ପଚିଗଲା । ଦେହ ଫାଟି ରକ୍ତ ପାଣି ଟୋପାଟୋପା ହୋଇ ଗଛ ତଳେ ପଡିଲା । ସେହି ପଚା ପାଣି ଖାଇବାକୁ ଠେକୁଆଟିଏ ଆସିଲା । ଠେକୁଆଟି ପାଣି ପିଇ ମୁଣ୍ଡ ଉଠାଇ ଉପରକୁ ଚାହିଁବା ସମୟରେ ଶବଟି ଛିଣ୍ଡି ତଳେ ପଡିଯିବାରୁ ଏହା ଠେକୁଆ ଉପରେ ଚାପି ହୋଇଗଲା ଏବଂ ଠେକୁଆଟି ଚାପି ହୋଇ ମରିଗଲା । ଶବ ତଳୁ ଠେକୁଆଟିକୁ ବାହାର କରି ମହାଜନର ସ୍ତ୍ରୀ ଘରକୁ ଆଣି ତାର ମାଂସ ରାନ୍ଧି ମହାଜନକୁ ଖାଇବାକୁ ଦେଇ ପହେଳିଟିଏ ପଚାରିଲା ।

'ମଲା ମଣିଷ ଯେ ଠେକୁଆ ମାରେ
ଜୀଅନ୍ତା ମଣିଷ ଖାଏ
ଏ ପହେଳିକୁ କହି ନପାରିଲେ
ଫାଶୀ ଦଣ୍ଡ ପାଇଥାଏ'

ମହାଜନ ପହେଳିର ଉତ୍ତର ଦେଇ ପାରିଲା ନାହିଁ। ମହାଜନର ସ୍ତ୍ରୀର ଅଭିଯୋଗରେ ପୋଲିସ ମହାଜନକୁ ଜେଲ୍‌କୁ ନେଇଗଲା । ମହାଜନର ଭଉଣୀଟିଏ ଦୂର ଆଶ୍ରମରେ ରହୁଥିଲା । ମହାଜନ ତାକୁ ଦେଖିବାକୁ ଚାହିଁବାରୁ ପୁଲିସ ତାକୁ ଆଣିବାକୁ ଗଲେ।

ବାଟରେ ଯାଉଥିବା ବେଳେ ପୋଲିସ ମହାଜନର ଭଉଣୀକୁ କହିଲେ:

ଭଉଣୀ, ତୁମେ ଚାଲୁଥାଅ, ମୁଁ ଏଇଠୁ ଆସୁଛି। ଭଉଣୀ ଭାଇକୁ ଦେଖିବ ବୋଲି ଆଗ୍ରହ ବଢିଯାଇଥାଏ। ତେଣୁ ସେ କାହାକୁ ଅପେକ୍ଷା ନକରି ଚାଲିବାକୁ ଆରମ୍ଭ କଲା । କିଛି ବାଟ ଚାଲିବା ପରେ ମହାଜନର ଭଉଣୀ ବାଟରେ ଥିବା ଏକ ଶର୍ଗି ଗଛ (ଶାଳ) ମୂଳେ ବସି ପଡିଲା ।

ଉକ୍ତ ଶର୍ଗି ଗଛ ଡାଳରେ ଶୃଙ୍ଗୀର ଚଢେଇ ଦମ୍ପତି ବସା ବାନ୍ଧି ରହିଥିଲେ। ଶୃଙ୍ଗୀର ଚଢେଇର ପତ୍ନୀ ତାର ସ୍ୱାମୀଙ୍କୁ କହିଲା, ଦେଖ ମଣିଷଟିଏ ଗଛ ତଳେ ବସିଛି। ତାକୁ ବଡ଼ ଦୁଃଖ ପଡିଛି। ତାକୁ ବୁଦ୍ଧି ନ ବତାଇଲେ ବହୁତ ଅସୁବିଧା ହେବ।

ପୁରୁଷ ଶୃଗାଳର ପକ୍ଷୀଟି କହିଲା: ମହାଜନର ପତ୍ନୀ ମହାଜନଙ୍କୁ ଗୋଟିଏ ପହେଲି ପଚାରିଛି। ତାର ଉତ୍ତର ଦେଇ ନପାରିବାରୁ ମହାଜନ ଫାଶି ପାଇବ।

ପୁରୁଷ ଶୃଗାଳର ପକ୍ଷୀଟି ତାର ପତ୍ନୀଙ୍କୁ ହଳିଆ ଓ ମହାଜନ ପତ୍ନୀର ପ୍ରଣୟ କାହାଣୀ ଓ ଠେକୁଆ ମରିବା କଥା ପହେଲିର ରହସ୍ୟ ବୋଲି ବୁଝାଇ ଦେଲା।

ଭଉଣୀ ଗଛ ତଳେ ବସି ଦୁଇ ପକ୍ଷୀଙ୍କ କଥା ଶୁଣୁଥିଲା। ଠିକ୍ ତା ଭାଇଙ୍କୁ ଶୂଳିରେ ବସାଇବାକୁ ନେଉଥିବାବେଳେ ଭଉଣୀ ଯାଇ ଶୂଳି ସ୍ଥାନରେ ପହଞ୍ଚିଗଲା। ପୋଲିସ ମହାଜନକୁ ପହେଲିର ଉତ୍ତର କ'ଣ ବୋଲି ଆଉ ଥରେ ପଚାରିଲେ। ମହାଜନ ଉତ୍ତର ଦେଇ ପାରିବ ନାହିଁ ବୋଲି କହିଲା।

ସେଠି ଉପସ୍ଥିତ ଥିବା ମହାଜନର ଭଉଣୀ ଚଅଟ୍ କିନା ଏହାର ଉତ୍ତର ଭାଇଙ୍କୁ କହିଦେଲା। ହଳିଆ ଓ ତା ଭାଉଜ ମଧ୍ୟରେ ଥିବା ପ୍ରଣୟ କାହାଣୀ ହିଁ ପହେଲିର ଉତ୍ତର ବୋଲି ଭଉଣୀ କହିବାରୁ ଭାଇ ସବୁ ବୁଝି ପାରିଲା। ପୋଲିସ ମଧ୍ୟ ଏହି ଘଟଣାର ହୃଦବୋଧ କରି ମହାଜନଙ୍କୁ ଛାଡି ଦେଲେ। ସେହି ଶୂଳିରେ ମହାଜନର ସ୍ତ୍ରୀକୁ ବସାଇଦେଲେ।







# ବିଧବା ମା' ଓ ବାପ ଛେଉଣ୍ଡ ପୁଅ

(ନବରଙ୍ଗପୁର, ଭତରା ଲୋକ କଥା)

ଗୋଟିଏ ଗାଁରେ ବିଧବା ବୁଢିଟିଏ ଓ ପୁଅଟିଏ ରହୁଥିଲେ। ଧୀରେ ଧୀରେ ପୁଅ ବଡ଼ ହେଲା। ପୁଅ ବଡ଼ ହେବା ପରେ ରାଜା ଘରେ ଜମିବାଡ଼ି କାମ କଲା। ତା ମା ଆଉ ଜଣକ ଘରେ ପାଇଟି କରି ପେଟ ପୋଷିଲା। ଦୁଇ ଜଣ ଦୁଃଖେକଷ୍ଟେ ଚଳୁଥିଲେ।

ଆଉ ଗୋଟିଏ ଗାଁରେ ଦୁଇ ଜଣ ସାଉକାର୍ ରହୁଥିଲେ। ଜଣଙ୍କ ନାଁ ଡମ୍ ସାଉକାର୍ ଓ ଅନ୍ୟ ଜଣଙ୍କ ନାଁ ଟମ୍ ସାଉକାର୍। ଡମ୍ ସାଉକାର ଭିକାରୀକୁ ଭିକ ମୁଠେ ବି ଦିଏନାହିଁ। ଆର ସାଉକାରଟି କିନ୍ତୁ ଭାରି ଦୟାବନ୍ତ ଓ ଗରିବ ଭିକାରୀଙ୍କୁ ଦେଖିଲେ ତାର ହୃଦୟ

ବୁଢ଼ି ଏହି କଥା ଭାବିଭାବି ବୁଢ଼ା ସାଙ୍ଗରେ ଗପିଗପି ଚାଲିଥାଏ। ଘରକୁ ଫେରିଲେ ବୁଢ଼ା ମସଲା ଓ ତେଲ ଆଣିବ ଏବଂ ବୁଢ଼ି ତାକୁ ଯତନରେ ରାନ୍ଧିବ ଏବଂ ଦୁହେଁ ମନ ଭରି ଖାଇବେ। ବୁଢ଼ି ଏମିତି ଭାବି ଭାବି ଚାଲିଥାଏ।

ସେମାନେ ଜଙ୍ଗଲରେ ପହଞ୍ଚିଗଲେ। ବୁଢ଼ା ଯାଇ ଦେଖିଲାବେଳକୁ କୌଣସି ଯନ୍ତାରେ ଗୋଟିଏ ହେଲେ ମୂଷା ପଡ଼ି ନାହାନ୍ତି। କେବଳ ଗୋଟିଏ ଯନ୍ତାରେ ଗୋଟିଏ ଛୋଟ ମୂଷା ଛୁଆଟି ପଡିଯାଇଛି। ବୁଢ଼ିର ମନ ଦୁଃଖ ହୋଇଯାଇଥିଲେ ମଧ୍ୟ ଗୋଟିଏ ମୂଷା ପଡିଥିବାରୁ ସାମାନ୍ୟ ଉଲ୍ଲସିତ ଜଣା ପଡୁଥିଲା।

ମୂଷା ଛୁଆଟିକୁ ପୋଡି ଭର୍ତ୍ତା କରି ଖାଇବ ବୋଲି ବୁଢ଼ି ମନେମେନେ ଭାବି ନେଇଥାଏ।

ବୁଢ଼ା ଏହି ମୂଷା ଛୁଆଟିକୁ ଯନ୍ତାରୁ କାଢି ଆଣି ମାରିବାକୁ ଚେଷ୍ଟା କଲା। ମୂଷା ଛୁଆଟି ବୁଢ଼ାଟିକୁ ବିକଳ ହୋଇ ପ୍ରାର୍ଥନା ହେଲା। କହିଲା: ମୁଁ ସାମାନ୍ୟ ମୂଷା ଛୁଆଟା ମୋତେ ମାରନାହିଁ। ମୋ ଦେହରୁ କେତେ ବା ମାଂସ ବାହାରିବ ତମେ ବୁଢ଼ାବୁଢ଼ି ଦୁଇ ପ୍ରାଣୀ ଖାଇ ସନ୍ତୁଷ୍ଟ ହେବ? ତେଣୁ ମୋତେ ମାର ନାହିଁ। ଦେଖିବ ମୁଁ ତମର ବହୁ ଉପକାରରେ ଆସିବି।

ମୂଷା ଛୁଆଟିର ଏପରି ବିକଳ କଥା ଶୁଣି ବୁଢ଼ାର ମନ ତରଳିଗଲା। ତାକୁ ଆଉ ମାରିବାକୁ ବୁଢ଼ାର ହାତ ଗଲାନି। ତେଣୁ ସେ ମାରିଲା ନାହିଁ। ତେଣୁ ସେ ଯନ୍ତାରୁ କାଢି ମୂଷାଟିକୁ ମାରିବାକୁ ବୁଢ଼ିକୁ କହିଲା। ବୁଢ଼ି ବୁଢ଼ା କଥା ଶୁଣି ମୂଷା ଛୁଆଟିକୁ ମାରିବାକୁ ଗଲାରୁ ମୂଷା ଛୁଆଟି ଠିକ୍ ଏକା କଥା ବୁଢ଼ିକୁ କହିଲା ଯାହା ପୂର୍ବରୁ ବୁଢ଼ାକୁ କହିଥିଲା। ମୂଷା ଛୁଆଟି କାନ୍ଦୁଣୁ ମାନ୍ଦୁଣୁ ହୋଇ ବୁଢ଼ିକୁ କହିଲା: ମୁଁ ମୂଷା ଛୁଆଟା ମୋତେ ମାରନାହିଁ। ମୋ ଦେହରୁ କେତେ ବା ମାଂସ ବାହାରିବ ତମେ ବୁଢ଼ାବୁଢ଼ି ଦୁଇ ପ୍ରାଣୀ ଖାଇ ସନ୍ତୁଷ୍ଟ ହେବ? ମୋତେ ମାର ନାହିଁ। ଦେଖିବ ମୁଁ ତମର ବହୁ ଉପକାରରେ ଆସିବି। ମୂଷା ଛୁଆଟିର ଏପରି ବିକଳ କଥା ଶୁଣି ବୁଢ଼ିର ମନ ତରଳିଗଲା। ତେଣୁ ତାର ବି ହାତ ଗଲାନି ମୂଷା ଛୁଆଟିକୁ ମାରିବାକୁ। ତେଣୁ ଦୁହେଁ ମୂଷା ଛୁଆଟିକୁ ନ ମାରି ସାଙ୍ଗରେ ଘରକୁ ନେଇଗଲେ। ବୁଢ଼ା, ବୁଢ଼ିଙ୍କର ପୁଅ ଝିଅ ନଥିଲା। ତେଣୁ ଦୁହେଁ ମୂଷା ଛୁଆଟିକୁ ପୁଅ ଭଳି ପାଳିଲେ। ମୂଷା ଛୁଆଟି ଧୀରେଧୀରେ ବଡ ହେଲା।

କନ୍ଧ ବୁଢ଼ାଟି ବାଡରେ ମକା ଚାଷ କରିଥାଏ। ବୁଢ଼ାର ଭଲ ମକା ଫସଲ ହୋଇଥାଏ। ବିଲୁଆଙ୍କର ଏହା ଦେଖି ଭାରି ଲୋଭ ହେଲା।

ଦିନେ ବିଲୁଆମାନେ ଏକତ୍ରିତ ହୋଇ ବୁଢ଼ାର ମକା ଖାଇଯିବାକୁ ଯୋଜନା କଲେ। ସେମାନେ ବୁଢ଼ାର ବାଡ ପଟେ ବସି ଏହି କଥାବାର୍ତ୍ତା ହେଉଥିବାବେଳେ ମୂଷାଟି ଏହା ଶୁଣିଦେଲା।

ମୂଷାଟି ଏହା ଶୁଣି ସଙ୍ଗେସଙ୍ଗେ ଆସି ବୁଢ଼ା, ବୁଢ଼ିକୁ ଜଣେଇ ଦେଲା। କହିଲା: ଆଜି ରାତିରେ ବିଲୁଆମାନେ ବାଡରୁ ମକା ଖାଇଯିବାକୁ ଯୋଜନା କରିଛନ୍ତି। ତେଣୁ ଆଜି ରାତିରେ

ମକା କିଆରିକୁ ଜଗ ଏବଂ ବିଲୁଆମାନଙ୍କର ଏହି ପ୍ଲାନ୍‌କୁ ଭଣ୍ଡୁର କରିଦିଅ। ମୂଷାଟି କଥା ମାନି ବୁଢା ଠେଙ୍ଗାଟି ଧରି ସେଦିନ ରାତିରେ ମକା କିଆରିରେ ଛକି ଜଗି ବସିଲା।

ସନ୍ଧ୍ୟା ଯାଇ ରାତି ହେଲା। ଯେତେବେଳେ ରାତି ବେଶି ହୋଇଗଲା ଏବଂ ଚାରିଆଡ ଶୂନଶାନ ହୋଇଗଲା; ଠିକ୍ ସେତିକିବେଳେ ବିଲୁଆମାନେ ସତକୁ ସତ ମକା ଖାଇବାକୁ ବାଡକୁ ଆସିଲେ। ବୁଢା ବିଲୁଆମାନଙ୍କୁ ଦେଖି ମୂଷାକୁ ମନେମନେ ତାରିଫ କରିବାକୁ ଲାଗିଲା। ଯେମିତି ବିଲୁଆମାନେ ମକା କିଆରିକୁ ପଶିଛନ୍ତି, ବୁଢା ତ ଜଗିଥିଲା। ଠେଙ୍ଗା ବାହାର କରି ବିଲୁଆଙ୍କ ଉପରେ ଠେଙ୍ଗା ମାଡ କଲା। ସେମାନଙ୍କ ମଧ୍ୟରୁ ଚାରି ପାଞ୍ଚଟି ବିଲୁଆଙ୍କ ପିଠିରେ ଠେଙ୍ଗା ମାଡ ବାଜିବାରୁ ସେମାନେ କେଁକାଁ କରି କିଏ କୁଆଡେ ଛିନ୍‌ଛତର ହୋଇ ପଳେଇବାକୁ ଲାଗିଲେ। ଏକ ବିଲୁଆ ଉପରେ ଅଧିକ ଚୋଟ ଲାଗିଯିବାରୁ ସେ ସେଠାରେ ଘାଲେଇକି ପଡି ରହିଲା। ଏହି ସମୟରେ ବୁଢା ଟାଙ୍ଗିଆରେ ତା ଲାଞ୍ଜ ଉପରେ ଚୋଟ ପକାଇବାରୁ ସେହି ବିଲୁଆର ଲାଞ୍ଜ ଛିଣ୍ଡିଗଲା ଏବଂ ସେହି ଲାଞ୍ଜକଟା ବିଲୁଆଟି ଚିର୍‌ଚିର୍ ହୋଇ ଦଉଡି ପଳେଇଗଲା।

ବୁଢା ତାର ଲାଞ୍ଜ କାଟି ଦେଇଥିବାରୁ ସେଇ ଲାଞ୍ଜଖଣ୍ଡି ବିଲୁଆଟି ମନରେ ପ୍ରତିଶୋଧର ଅଗ୍ନି ଜଳିବାକୁ ଲାଗିଲା। କିଛି ଦିନ ଚାଲିଗଲା। ସେହି ଲାଞ୍ଜ ଖଣ୍ଡି ବିଲୁଆଟି ଅନ୍ୟ ବିଲୁଆମାନଙ୍କୁ ପୁଣି ଡାକି ଏକାଠି କଲା ଏବଂ ବୁଢା ଉପରେ ପୁଣି ପ୍ରତିଶୋଧ ନେବାକୁ କହିଲା। ସବୁ ବିଲୁଆମାନେ ବୁଢା ଉପରେ ପ୍ରତିଶୋଧ ନେବାକୁ ପୁଣି ଯୋଜନା କଲେ।

ଏଥର ସେମାନେ ବୁଢାର କୁକୁଡା ଭାଡି ଉପରେ ନଜର ପକେଇଲେ। ବୁଢାର ସବୁ କୁକୁଡାଗୁଡିକୁ ମାରି ଖାଇଦେବାକୁ ବିଲୁଆମାନେ ପୁଣି କଥାବାର୍ତ୍ତା ହେଉଥିଲେ। ଏକଥା ମଧ୍ୟ ପୁଣି ମୂଷାଟି ଶୁଣି ଦେଲା। ମୂଷାଟି ଏହା ଶୁଣି ବୁଢାକୁ କହିଦେଲା: ଆସନ୍ତାକାଲି ବିଲୁଆମାନେ ତୋର କୁକୁଡା ଭାଡିରୁ ସବୁ କୁକୁଡାତକ ଖାଇଦେବେ ବୋଲି ଯୋଜନା କରିଛନ୍ତି। ତେଣୁ ସତର୍କ ରୁହ। ବୁଢା ମୂଷାର କଥା ଶୁଣି ପୁଣି ବିଲୁଆଙ୍କ ଯୋଜନା ସମ୍ପର୍କରେ ଜାଣି ପାରିଲା। ଏହା ମଧ୍ୟରେ ଲାଞ୍ଜ ଖଣ୍ଡି ବିଲୁଆ ଯାଇ ବୁଢାର କୁକୁଡା ଭାଡିକୁ ଠାବ କରି ଆସିଲା।

ପରଦିନ ସନ୍ଧ୍ୟା ହେଲା। ବୁଢା ବିଲୁଆଙ୍କୁ ପୁଣି ପାନେ ଦେବା ପାଇଁ ଭାଡି ପଛରେ ଛକି ବସିଲା। ହାତରେ କିଛି ଧାରୁଆ ବ୍ଲେଡ୍ ଧରି ବୁଢା ବିଲୁଆଙ୍କ ଆଗମନ ଅପେକ୍ଷାରେ ରହିଲା। ରାତି ଅଧିକ ହୋଇଗଲାରୁ ବିଲୁଆମାନେ କୁକୁଡା ଖାଇବାକୁ ବୁଢାର ଭାଡିକୁ ଆସିଲେ। ଗୋଟିଏ ଗୋଟିଏ କରି ବିଲୁଆମାନେ ଭାଡିକୁ ପଶିଲେ। ପ୍ରଥମେ ଗୋଟିଏ ବିଲୁଆ ତାର ମୁହଁକୁ ଭାଡ଼ି ଭିତରକୁ ପୂରେଇଲା। ଏହି ସମୟରେ ବୁଢାଟି ହାତରେ ଧାରୁଆ ବ୍ଲେଡ୍ ଧରି ଭାଡ଼ି ନିକଟରେ ଛକି ବସିଥିଲା। ଯେମିତି ବିଲୁଆ କୁକୁଡ଼ା ଭାଡି ଭିତରକୁ ମୁହଁ ପୂରେଇଛି ବୁଢା ଚର୍ କିନା ଦେଲା କାଟି। ବିଲୁଆର ମୁହଁରୁ ଧାରଧାର ହୋଇ ରକ୍ତ ବାହାରିଲା। ରାତି



# ବିଚରା ସାନ ଭାଇ

(କୋରାପୁଟ, ପରଜା ଲୋକ କଥା)

ଗୋଟିଏ ଗାଁରେ ସାତ ଭାଇ ଥିଲେ। ଛଅ ଭାଇଯାକ ହୃଷ୍ଟପୁଷ୍ଟ ଥିଲେ ଏବଂ ସବା ସାନ ଭାଇଟି ଅତି ଦୁର୍ବଳ ଓ ରୋଗିଣା ଥିଲା। ତେଣୁକରି ସେ କିଛି କାମ କରିପାରୁ ନଥିଲା। ଛଅ ଭାଇଯାକ ବିଲବାଡିଠାରୁ ଆରମ୍ଭ କରି ଜଙ୍ଗଲରୁ କାଠ ସଂଗ୍ରହ କରୁଥିଲେ। ସାନ ଭାଇଟି କେବଳ ଘରେ ବସି ରହୁଥିଲା।

ଏମିତି ଏମିତି ବହୁତ ଦିନ ବିତିଗଲା । ସାନ ଭାଇଟି ଘରେ ବସି ରହୁଥିବାରୁ ଅନ୍ୟ ଭାଇମାନେ ବିରୋଧ କଲେ । ବିଶେଷକରି ଭାଉଜମାନେ ସାନ ଦିଅର ଉପରେ ସବୁବେଳେ ଅଶାନ୍ତି ହେଉଥିଲେ । କିନ୍ତୁ ସବା ବଡ଼ ଭାଉଜଟି ସାନ ଦିଅରଟିକୁ ଅଧିକ ଗେହ୍ଲା କରୁଥିଲା । ସାନ ଭାଇଟି ଦିନକୁ ଦିନ ଅଧିକ ରୋଗିଣା ଓ ଦୁର୍ବଳ ହୋଇ ପଡୁଥାଏ । ଏହା ଦେଖି ଅନ୍ୟ ଭାଇମାନେ ତା ଉପରକୁ ଅଧିକ ରାଗିବାକୁ ଲାଗିଲେ ।

ଦିନେ ସବୁ ଭାଇମାନେ ମିଶି ତାକୁ ମାରି ଦେବାକୁ ଯୋଜନା କଲେ । ଦିନେ ସବୁ ଭାଇମାନେ ହଳ କରିବାକୁ ଗଲେ ଏବଂ ଜଙ୍ଗଲ ଆଡେ ବୁଲି ଆସିବାକୁ ସାଥୀରେ ସାନ ଭାଇକୁ ଡାକିନେଲେ । ସାନ ଭାଇ ମଧ୍ୟ ଅତି ଆନନ୍ଦରେ ଭାଇମାନଙ୍କ ସହିତ ହଳ ଦେଖିବାକୁ ବିଲକୁ ଗଲା । ସାନ ଭାଇକୁ ବିଲକୁ ଡାକି ନେଲାବେଳେ ଘର ଲୋକ କିନ୍ତୁ କେହି ଜାଣି ନଥିଲେ । ସବୁ ଭାଇମାନେ ବିଲରେ ପହଞ୍ଚି ହଳ କଲେ । କିଛି ସମୟ ପରେ ଭାଇମାନେ ସାନ ଭାଇକୁ ମାରି ବିଲରେ ପୋତି ଦେଇ ଘରକୁ ଫେରିଲେ । ଘରକୁ ଫେରି ଭାଇମାନେ ସାନ ଭାଇକୁ ଖୋଜିଲେ । ସାନ ଭାଇ କେଉଁଠି ଯାଇଛି ବୋଲି ଭାଇମାନେ ଘରେ ପଚରାପଚରି କଲେ । ସମସ୍ତେ ସାନ ଭାଇକୁ ଖୋଜାଖୋଜି କଲେ । ମାତ୍ର ବଡ଼ ଭାଉଜ ସାନ ଦିଅରକୁ ଖୋଜି ଖୋଜି ବିଲ ଆଡକୁ ଗଲା । ସେଠି ବସି ବଡ଼ ଭାଉଜ କାନ୍ଦୁଥିବାବେଳେ କ୍ଷେତରେ ପୋତି ହୋଇଥିବା ଗୋଟିଏ ମଲା ଲୋକର ହାତ ଦିଶିଲା । ବଡ଼ ଭାଉଜ ସନ୍ଦେହ କରି ସେହି ଶବଟିକୁ କାଢିଲା ବେଳକୁ ସେ ତାଙ୍କ ଦିଅର ବୋଲି ଜାଣି ପାରି ବାହୁନି ବାହୁନି କାନ୍ଦିବାକୁ ଲାଗିଲା । ସେତେବେଳକୁ କ୍ରମେ ରାତି ହୋଇ ଆସୁଥାଏ । ବଡ଼ ଭାଉଜ ଦିଅରର ଶବକୁ ଧରି କାନ୍ଦୁଥାଏ ।

ଏହି ସମୟରେ ଈଶ୍ୱର ପାର୍ବତୀ ଜଙ୍ଗଲକୁ ବୁଲି ଆସୁଥିଲେ । ସୋମାନେ ଦେଖିଲେ ସ୍ତ୍ରୀ ଲୋକଟି ଏକୁଟିଆ ବସି ଜଙ୍ଗଲଟାରେ କାନ୍ଦୁଛି । ସେମାନେ ସ୍ତ୍ରୀ ଲୋକଟି ପାଖକୁ ଆସିଲେ ଓ ତାଙ୍କ ଦୁଃଖ ସମ୍ପର୍କରେ ଜାଣିଲେ । ଶେଷରେ ଈଶ୍ୱର ପାର୍ବତୀ ଉକ୍ତ ସ୍ତ୍ରୀଲୋକଟିର ଦିଅରକୁ ଜୀବନ ଦାନ କରି ସେଠାରୁ ଉଭାନ୍ ହୋଇଗଲେ । ସାନ ଦିଅର ବଞ୍ଚିଲା ପରେ ଭାଉଜଙ୍କୁ ସବୁ ଘଟଣା କହିଲା । ଭାଉଜ ମନ ଦୁଃଖ କରି ଦିଅରକୁ ଘରକୁ ନେଇ ଫେରିଲା । ବଡ଼ ଭାଉଜ ତାର ସାନ ଦିଅରକୁ ନେଇ ଘରେ ପହଞ୍ଚିଲାବେଳକୁ ଅନ୍ୟ ଭାଇମାନେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ବଡ଼ ଭାଉଜ ଅନ୍ୟ ଭାଇମାନଙ୍କୁ ବହୁ ତିରସ୍କାର କଲା ଏବଂ ଅନ୍ୟ ଭାଇମାନେ ସାନ ଭାଇକୁ ମାରି ପୋତି ଦେଇଥିବା କଥାକୁ ଆଦୌ ମାନିଲେ ନାହିଁ । ଏମିତି କିଛି ଦିନ ଗଲା । ସବୁ ଭାଇମାନେ ଏକାଠି ମିଳିମିଶି ପୁଣି ଚଳିଲେ । କିନ୍ତୁ ଭାଇମାନଙ୍କର ତ ରାଗ ରହିଥାଏ । ସେମାନେ ସୁଯୋଗ ଉଣ୍ଡି ରହିଥାନ୍ତି । ପୁଣି କେବେ ସୁଯୋଗ ଆସିଲେ ପୁଣି ସାନ ଭାଇକୁ ମାରି ଦେବାକୁ ଯୋଜନା କରୁଥାନ୍ତି ।

ସବୁ ଭାଇମାନେ ପାଳିକରି ବାଇଗଣ ବାଡରେ ଜଗୁଥାନ୍ତି । ଶେଷରେ ସାନ ଭାଇର

ପାଳି ପଡ଼ିଲା । ସାନ ଭାଇ ଖାଇପିଇ ରାତିରେ ବାଇଗଣ ଜଗିବାକୁ ବାଡ଼ିକୁ ଗଲା । ରାତି ଅଧିକ ହୋଇଗଲା ପରେ ସବୁ ଭାଇମାନେ ବାଡକୁ ଯାଇ ସାନ ଭାଇକୁ କନ୍ଥାରେ ଗୁଡେଇ ନଦୀକୁ ଫିଙ୍ଗି ଦେଲେ ।

ନଦୀରେ ସେ ଭାସି ଭାସି ଯାଇ ଏକ ମାଲ୍ୟାଣି ତୁଠରେ ଲାଗିଲା । ସକାଳୁ ମାଲ୍ୟାଣି ତାକୁ ଉଠାଇ ନେଇ ଘରେ ରଖିଲା । ସେ ମାଲ୍ୟାଣି ଘରେ ରହି ଦିନକୁ ଦିନ ଅଧିକ ସ୍ୱାସ୍ଥ୍ୟବାନ୍ ହୋଇଗଲା । ମାଲ୍ୟାଣି ଘରେ ରହି ଜଙ୍ଗଲରେ ଚାଷବାସ କରି ନୂଆ ଘର ବନେଇଲା । ଖୁବ୍ ଧନୀ ହୋଇଗଲା । ଏହା ମଧ୍ୟରେ ସାନ ଭାଇଟି ମାଲ୍ୟାଣି ଘରେ ରହି ଅଧିକ ସୁନ୍ଦର ପାଲଟି ଯାଇଥିଲା । ଗୋଟେ ରାଜ କୁମାର ଭଳି ଦେଖାଗଲା ।

ଦିନେ ରାଜକୁମାରୀ ମାଲ୍ୟାଣି ବଗିଚାକୁ ବୁଲି ଆସିଥିଲା । ରାଜକୁମାରୀ ଏହି ଯୁବକକୁ ଦେଖି ତାଙ୍କ ପ୍ରତି ଦୁର୍ବଳତା ଆସିଗଲା ଏବଂ ତାଙ୍କୁ ବାହା ହେବାକୁ ଯାଇ ରାଜାଙ୍କୁ କହିଲା । ତା ପରେ ରାଜା ତାଙ୍କ ଝିଅକୁ ମାଲ୍ୟାଣି ପୁଅ ସହିତ ବାହା ଦେଲେ ଏବଂ ଏହା ପରେ ସେ ରାଜାଙ୍କ ଉତ୍ତରାଧିକାରୀ ହୋଇ ରାଜ୍ୟ ଶାସନ କଲେ ।

ଏଣେ ଅନ୍ୟ ଭାଇମାନେ ସବୁ ବିକିବାକି ଗରିବ ହୋଇ ଯାଇଥାନ୍ତି । ସେମାନେ ଘରଦ୍ୱାର ବିକିଭାଙ୍ଗି ଭିକାରୀ ହୋଇଯିବା ପରେ ଦିନେ ସାହାଯ୍ୟ ମାଗିବାକୁ ରାଜାଙ୍କ ପାଖକୁ ଗଲେ । ରାଜାଙ୍କ ଦରବାରରେ ଛଅ ଭାଇ ଓ ତାଙ୍କ ସ୍ତ୍ରୀମାନେ ଯାଇ ପହଞ୍ଚିଲେ । ରାଜା ଅର୍ଥାତ୍ ସାନ ଭାଇ ସେମାନଙ୍କର ଭାଇମାନଙ୍କୁ ଚିହ୍ନି ପାରିଲେ ଏବଂ ବଡ଼ ଭାଉଜକୁ ଚିହ୍ନି ପାରିଲେ । ତତ୍କ୍ଷଣାତ୍ ରାଜା ସବୁ ଭାଇମାନଙ୍କ ପାଇଁ ଘର ନିର୍ମାଣ କରିବାକୁ କର୍ମଚାରୀମାନଙ୍କୁ ନିର୍ଦ୍ଦେଶ ଦେଲେ ।

ବଡ଼ ଭାଉଜଙ୍କ ପାଇଁ ରାଣୀ ଉଆସ ବନେଇଲେ ।

ଭାଇମାନେ ନିଜନିଜର ଭୁଲ୍ ବୁଝିପାରି ବହୁ ମନ ଦୁଃଖ କରି ଆତ୍ମହତ୍ୟା କରିବାକୁ ଉଦ୍ୟମ କରୁଥିଲେ । କିନ୍ତୁ ସାନ ଭାଇ ସେମାନଙ୍କୁ ବୁଝେଇ ସେଠାରେ ରହିବାକୁ ଅନୁରୋଧ କରିବାରୁ ଭାଇମାନେ ସେଠାରେ ରହିଲେ । ପୁଣି ସବୁ ଭାଇମାନେ ଆନନ୍ଦରେ ମିଳିମିଶି ରହିଲେ ।





# ବର୍ଷା ଓ ଇନ୍ଦ୍ରଧନୁର କାହାଣୀ

(ରାୟଗଡା, ସଉରା ଲୋକକଥା)

ସଉରା ଆଦିବାସୀଙ୍କ ମହାପ୍ରଭୁ କିଟିଂ ଯେତେବେଳେ ପୃଥିବୀ ସର୍ଜନା କଲେ, ସେ ଗଛ, ଲତା, ପାହାଡ, ପର୍ବତ, ସମୁଦ୍ର, ଜୀବଜନ୍ତୁ ଓ ମଣିଷ ସୃଷ୍ଟି କଲେ। କିଟିଂ ମହାପ୍ରୁ ସବୁ ସର୍ଜନା କଲେ, କିନ୍ତୁ ବର୍ଷା ଓ ଇନ୍ଦ୍ରଧନୁ ସୃଷ୍ଟି କରିପାରି ନଥିଲେ। ଏହି ଦୁଇଟି ଜିନିଷ ସେ କିପରି ସର୍ଜନା କଲେ ତାହା ଏହି କାହାଣୀରେ ବର୍ଣ୍ଣିତ।

କିଟିଂ ମହାପ୍ରୁଙ୍କର ପୁଅଟିଏ ଥାଏ, ତାର ନାଁ ମାରୁ। ସେ ରୂପରେ ଯେମିତି, ଗୁଣରେ ମଧ୍ୟ ସେମିତି ଥିଲା। ମାରୁ ଥିଲା ସେତେବେଳେ ସବୁଠୁ ବଡ଼ ଧନୁର୍ଦ୍ଧର।

ସଉରା ରାଜାଙ୍କ ଝିଅ ଥିଲା ଅନନ୍ୟ ସୁନ୍ଦରୀ। କିଟିଂ ମହାପ୍ରୁଙ୍କ ପୁତ୍ର ମାଗୁ ସଉରା ରାଜ କନ୍ୟାର ପ୍ରେମରେ ପଡ଼ିଗଲା। ଦୁହେଁ ଦୁହିଁକୁ ଭାରି ଭଲ ପାଉଥିଲେ। ତେଣୁ ମାଗୁ ସଉରା ରାଜାଙ୍କ କନ୍ୟାକୁ ବିଭା ହେଲା। ଏଥିରେ କିନ୍ତୁ ସଉରା ରାଜା ସନ୍ତୁଷ୍ଟ ନଥିଲେ। ସେ କେମିତି ତାଙ୍କ ଜ୍ୱାଇଁକୁ ମାରିବାକୁ ଚାହୁଁଥିଲେ।

ଦିନେ ସଉରା ରାଜା ଝିଅ, ଜ୍ୱାଇଁଙ୍କୁ ବୁଲେଇ ନେବାକୁ ନିଜ ଘରକୁ ନିମନ୍ତ୍ରଣ କରିଥିଲେ। ଶ୍ୱଶୁରଙ୍କ ନିମନ୍ତ୍ରଣ ରକ୍ଷା କରି ଝିଅ, ଜ୍ୱାଇଁ ସଉରା ରାଜାଙ୍କ ଘରକୁ ଅତିଥି ହୋଇ ଗଲେ। ସଉରା ରାଜା ତ ଜ୍ୱାଇଁଙ୍କ ଉପରେ ଅସନ୍ତୁଷ୍ଟ ଥିଲେ, ତେଣୁ ତାଙ୍କୁ ମାରିବାକୁ ଯୋଜନା କରୁଥିଲେ। ଦିନେ ସଉରା ରାଜା ନିଜ ଝିଅର ଉପସ୍ଥିତିରେ ଜ୍ୱାଇଁ ମାଗୁକୁ ଅପମାନିତ କଲା। ମାଗୁ କିନ୍ତୁ ଥିଲା ଅତ୍ୟନ୍ତ ଭଦ୍ର ଓ ଶାନ୍ତିପ୍ରିୟ। ଶ୍ୱଶୁର ଅପମାନିତ କଲେ ମଧ୍ୟ ମାଗୁ ଏହାର କିଛି ପ୍ରତିବାଦ କରି ନଥିଲା। ଏହା ସତ୍ତ୍ୱେ ମଧ୍ୟ ଶଶୁରଙ୍କ ମନରେ ଶାନ୍ତି ଆସି ନଥିଲା। ଏହା ପରେ ସୁଯୋଗ ଉଣ୍ଡି ସଉରା ରାଜା ନିଜ ଜ୍ୱାଇଁଙ୍କୁ ଖଣ୍ଡାରେ ହାଣି ହତ୍ୟା କରିଦେଲେ। ଏହା ଦେଖି ରାଜ କନ୍ୟା ମଥା ପିଟି କାନ୍ଦିବାକୁ ଲାଗିଲା।

ପୁଅ ମରିଯିବା ଶୁଣି ବାପା କିଟିଂ ମହାପ୍ରୁ ଆସି ସମୁଦି ଶଉରା ରାଜାଙ୍କ ଘରେ ପହଞ୍ଚିଲେ। ପୁଅ ମରିଯିବାରୁ ସେ ବହୁତ ଦୁଃଖ କଲେ। ତେବେ ଏହା ବିଧିର ବିଧାନ ଥିଲା। ତାଙ୍କ ପୁତ୍ର ମାଗୁ ଥିଲା ଅଭିଶପ୍ତ ଓ ସେ ସେତିକି ଦିନ ପାଇଁ ଜୀବନ ନେଇ ଆସିଥିଲା। କିଟିଂ ମହାପ୍ରୁ ଏହା ଜାଣିଥିଲେ। ତେବେ ପୁତ୍ରର ବିୟୋଗରେ କିଟିଂ ମହାପ୍ରୁ ଭାଙ୍ଗି ପଡିଥିଲେ।

ଯେହେତୁ ମାଗୁ ଥିଲା ସ୍ୱାଭବରେ ଅତ୍ୟନ୍ତ ଭଦ୍ର ଓ ନମ୍ର ତେଣୁ ସେ ଶଶ୍ୱରଙ୍କ ଭଳି ଗୁରୁଜନଙ୍କୁ ଜବାବ ଦେଇ ନଥିଲେ। ସେ ଚାହିଁଥିଲେ, ତାଙ୍କ ଧନୁରେ ଶବର ରାଜାଙ୍କୁ ଉଡାଇ ଦେଇଥାନ୍ତେ, କିନ୍ତୁ ତାହା କଲେ ନାହିଁ ସେ ତାଙ୍କ ନମ୍ରତାର ଏକ ଉଦାହରଣ ସୃଷ୍ଟି କରିଗଲେ। ସମଗ୍ର ସଉରା ଜାତି ପାଇଁ ମାଗୁ ଥିଲେ ନମ୍ର ଓ ଉଦାରତାର ପ୍ରତୀକ।

ବାପା କିଟିଂ ଦେବତା ପୁତ୍ରର ଶବ ନିକଟରେ ବସି ପଡି କହିଲେ: ପୁତ୍ର! ତୋ ଭଳି ଧନୁର୍ଧର ଶଉରା ରାଜାଙ୍କର କିଛି କଲାନାହିଁ। ତୁ ଚାହିଁଥିଲେ ତାଙ୍କୁ ବିନାଶ କରି ଦେଇ ପାରିଥାନ୍ତୁ। ଯେହେତୁ ତୁ ଗୁରୁଜନଙ୍କୁ ସମ୍ମାନ ଦେଇଛୁ, ତୋତେ ପୃଥିବୀର ସମସ୍ତ ଲୋକ ସମ୍ମାନ ଦେବେ। ତୋର ଧନୁ ବର୍ଷା ସମୟରେ ଆକାଶରେ ଶୋଭା ପାଇବ। ତୁ ଇନ୍ଦ୍ରଧନୁ ଭାବେ ଶୋଭା ପାଇବୁ। ଆଉ ତୋ ସ୍ତ୍ରୀ ଆଖିର ଲୁହ ବର୍ଷା ହୋଇ ଝରିବ। ଏମିତି ଭାବେ କିଟିଂ ଦେବତା ଇନ୍ଦ୍ରଧନୁ ଓ ବର୍ଷାର ସର୍ଜନା କଲେ ବୋଲି ସଉରାମାନଙ୍କର ବିଶ୍ୱାସ ରହିଛି।





# ମ୍ୟାଜିକ୍ ଚକି

(ନବରଙ୍ଗପୁର, ଗାଦବା ଲୋକ କଥା)

ଗୋଟିଏ ଗାଁରେ ଜଣେ ଚାଷୀ ଥିଲା । ଚଣା ଚାଷ କରି ତା ଗୁଜୁରାଣ ମେଣ୍ଟାଉଥିଲା । କିନ୍ତୁ ଦିନକୁ ଦିନ ତାର ଦୁଃଖ ବଢିବାରେ ଲାଗିଲା । ପ୍ରତି ରାତିରେ ତାର ଚଣା ଫସଲକୁ କେହି ଖାଇ ଦେଉଥିବାରୁ ମନ ଦୁଃଖରେ ସେ ଅଧିକ ଭାଙ୍ଗି ପଡ଼ିଲା ।

ଦିନେ ରାତିରେ ଚାଷୀ ଯାଇ ଫସଲ ନିକଟରେ ଜଗି ବସିଲା। ହଠାତ୍ ରାତି ଅଧ ବେଳକୁ ଏକ ଚକି ଆକାଶରୁ ଉଡ଼ି ଆସି କ୍ଷେତରେ ପଶି ଖାଇବାକୁ ଲାଗିଲା। ତା ପରେ ଚକିଟି ହଠାତ୍ ଉଭାନ୍ ହୋଇଗଲା।

ଲୋକଟି ବୁଝିଲା ଯେ, ଗାଁର କାହା ଚକି ଆସି କ୍ଷେତରେ ପଶୁଛି। ତେଣୁ ଯାଇ ଗାଁର ସବୁ ଲୋକଙ୍କୁ ନେହୁରା ହୋଇ କହିଲା: ସମସ୍ତେ ସମସ୍ତଙ୍କ ଚକିକୁ ରାତିରେ ବାନ୍ଧିକି ରଖନ୍ତୁ। କାହାର ନା କାହାର ଚକି ଯାଇ କ୍ଷେତରେ ପଶି ଚଣା ଖାଇ ଯାଉଛି।

ଚାଷୀଟିର ଦୁଃଖ ସହି ନପାରି ଗାଁ ଲୋକେ ସମସ୍ତେ ନିଜନିଜର ଚକିକୁ ବାନ୍ଧି ରଖିଲେ। କିନ୍ତୁ ଏତିକିରେ ଚାଷୀର ଇଲାଜ୍ ହେଲାନାହିଁ। ପୁଣି ମଧ୍ୟ ସେଦିନ ରାତିରେ ତା କ୍ଷେତରୁ ଚକି ଆସି ଚଣା ଖାଇଥିବା ଚାଷୀ ଜାଣି ପାରିଲା।

ଏଥର ଚାଷୀ ପୁଣି ରାତିରେ ଆସି ଚଣା କ୍ଷେତରେ ଜଗି ରହିଲା। ଯେମିତି ରାତି ଅଧିକ ହୋଇଛି, ଚକିଟି ଆସି କ୍ଷେତରେ ଚଣା ଖାଇବାକୁ ଲାଗିଲା।

ଏହା ଦେଖି ଚାଷୀଟି ଲୁଚିଲୁଚି ଚକିଟିକୁ ଧରି ପକେଇଲା। ସେଉଟୁ ଚଅଟ୍‌କିନା ଚକିଟି ଆକାଶ ମାର୍ଗକୁ ଉଡିଗଲା। ଚାଷୀଟି ଚକିଟିକୁ ଧରି ମଧ୍ୟ ଆକାଶକୁ ଚାଲିଗଲା।

ଚକିଟି ଯାଇ ସ୍ୱର୍ଗ ପୁରରେ ପହଞ୍ଚିଲା। ଚାଷୀଟି ମଧ୍ୟରେ ସ୍ୱର୍ଗରେ ଓହ୍ଲାଇଲା। ସ୍ୱର୍ଗ ଲୋକରେ ମଣିଷକୁ ଦେଖି ସ୍ୱର୍ଗବାସୀ ଆନନ୍ଦିତ ହେଲେ।

ମର୍ତ୍ତ୍ୟଲୋକରେ ମଣିଷମାନେ ଭଲ ଗପ କହନ୍ତି ବୋଲି ଜଣେ ସ୍ୱର୍ଗବାସୀ କହିଲେ ଏବଂ ଚାଷୀଟିକୁ ଭଲ ଗପ କହିବାକୁ ଅନୁରୋଧ କଲେ।

ଚାଷୀଟି କହିଲା: ଯଦି ମୁଁ ଗପ କହିବି, ତା ବଦଳରେ ଆପଣମାନଙ୍କୁ ମୋତେ ବହୁତ ଧନ ରତ୍ନ ଦେବାକୁ ପଡ଼ିବ। ତେବେ ଆପଣମାନଙ୍କ ଅନୁରୋଧ ରକ୍ଷା କରି ମୁଁ ଏମିତି ଏକ ଶସ୍ତା ଗପ କହିବି ଯାହାର ଶବ୍ଦ ପିଛା ମୂଲ୍ୟ ହେବ ଗୋଟିଏ ସୁନା ମୁଦ୍ରା।

ଚାଷୀଟିଠାରୁ ଏକଥା ଶୁଣି ସ୍ୱର୍ଗବାସୀ ଆଶ୍ୱସ୍ତ ହେଲେ ଏବଂ କହିଲେ: ଶବ୍ଦ ପିଛା ମାତ୍ର ଗୋଟିଏ ସ୍ୱର୍ଣ୍ଣମୁଦ୍ରା, ତେବେ କିଛି ବ୍ୟସ୍ତ ହେବାର ନାହିଁ, ମାତ୍ର ଆମେ ଭାବିଥିଲୁ ଆହୁରି ଅଧିକ କିଛି ମାଗିବ ବୋଲି।

ଚାଷୀଟିର ମୂଲଚାଲରେ ସ୍ୱର୍ଗବାସୀ ରାଜି ହେଲେ ଏବଂ ଚାଷୀଟି ଗପ କହିବା ଆରମ୍ଭ କଲା। ଚାଷୀଟି ଗପ କହି ସ୍ୱର୍ଗବାସୀଙ୍କଠାରୁ ବହୁ ସ୍ୱର୍ଣ୍ଣମୁଦ୍ରା ହାସଲ କଲା। ଏବଂ ପରଦିନ ଠିକ୍ ରାତି ବେଳକୁ ଚାଷୀଟି ସେହି ଚକି ସାଥୀରେ ପୁଣି ମର୍ତ୍ତ୍ୟକୁ ଫେରି ଆସିଲା।

ଏହା ମଧ୍ୟରେ କିଛି ଦିନ ବିତିଗଲା। ଚାଷୀଟି ଦିନକୁ ଦିନ ଧନୀ ହେବାରେ ଲାଗିଲା। ଗାଁ ଲୋକେ ଦେଖି ଆର୍ଶ୍ଚର୍ଯ୍ୟ। ଚାଷୀଟି ହଠାତ୍ କେମିତି ସାଉକାର ହୋଇଗଲା, ଏହା ଦେଖି

ଗାଁ ଲୋକେ ତାଜୁବ୍। ସେମାନେ ଚାଷୀଟିକୁ ଏ ସମ୍ପର୍କରେ ପଚାରିଲେ।

ଚାଷୀଟି ଚକି ସମ୍ପର୍କରେ ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କଲା। ଗାଁ ଲୋକେ ଚାଷୀଟିଠାରୁ ଏକଥା ଶୁଣି ଲୋଭରେ ସେମାନେ ଅନ୍ଧ ହୋଇଗଲେ। ସେମାନେ ଚାଷୀଟିକୁ ମାରିଦେଇ ପରଦିନ ରାତିରେ କ୍ଷେତକୁ ଯାଇ ଚକିଟିକୁ ଜଗି ବସିଲେ। ପୂର୍ବ ରାତି ପରି ଚକିଟି ଚଣା ଖାଇବାକୁ କ୍ଷେତକୁ ଆସିଲା। ଚକିଟି ଗାଁ ଲୋକଙ୍କର ଏପରି କାରସାଦିକୁ ଜାଣି ପାରିଥିଲା। ଗାଁ ଲୋକଙ୍କ ପାନେ ଚଖେଇବାକୁ ଚକିଟି ମଧ୍ୟ ଏକ ଯୋଜନା ପ୍ରସ୍ତୁତ କରିଦେଲା।

ଚକିଟି ଆସି ଚଣା ଖାଇବାକୁ ଲାଗିଲା। ଏହି ସମୟରେ ସମସ୍ତ ଗାଁ ଲୋକେ ଚକିଟିକୁ ଦେଖି କଣକ ପରେ ଜଣେ ଧରି ପକେଇଲେ। ଚକିଟି ଆକାଶରେ ଉଡିବାକୁ ଲାଗିଲା। ଚକିଟି ସାଙ୍ଗରେ ଗାଁ ଲୋକେ ମଧ୍ୟ ପରସ୍ପର ପରସ୍ପରର ଗୋଡକୁ ଧରି ଆକାଶରେ ଉଡୁଥିଲେ। ଗାଁ ଲୋକଙ୍କ ଖୁସି କହିଲେ ନସରେ। ସେମାନେ ସ୍ୱର୍ଗରୁ ବହୁତ ସୁନା ଆଣିବେ, ଏକଥା ଭାବିଭାବି ଗାଁଲୋକେ ପାଗଳ ପ୍ରାୟ ହୋଇ ସାରିଛନ୍ତି।

ଚକିଟି ପୂର୍ବରୁ ପ୍ରସ୍ତୁତ କରିଥିବା ଯୋଜନା ଅନୁଯାୟୀ, ତାକୁ ଧରିଥିବା ପ୍ରଥମ ଲୋକଟିକୁ କହିଲା: ସ୍ୱର୍ଗରୁ ତମେ କେତେ ସ୍ୱର୍ଣ୍ଣ ମୁଦ୍ରା ଆଣିବାକୁ ଚାହୁଁଛ, ଏବେଠାରୁ କହିଦିଅ। ସେହି ଅନୁସାରେ ମୁଁ ସ୍ୱର୍ଣ୍ଣ ମୁଦ୍ରା ସଂଗ୍ରହ କରିବି। ନଚେତ୍ ସ୍ୱର୍ଗକୁ ଗଲାପରେ ଏହା ଆଉ ସମ୍ଭବ ହୋଇପାରିବ ନାହିଁ। ତମେମାନେ ଖାଲି ହାତଟାରେ ଫେରି ଆସିବ। ସେଉଟୁ ଆଉ ଡେରି ନକରି ଲୋଭରେ ଅନ୍ଧ ହୋଇ ପଡିଥିବା ପ୍ରଥମ ଲୋକଟି ଦୁଇ ହାତକୁ ଚକିରୁ ଛାଡି ଦେଇ କହିଲା ମୋର ଏତେ ସ୍ୱର୍ଣ୍ଣ ମୁଦ୍ରା ଦରକାର। ଯେମିତି ପ୍ରଥମ ଲୋକଟି ଚକିଟିରୁ ହାତ ଦୁଇଟି ଛାଡି ଦେଇଛି, ଚଅଟ୍ କିନା ଲୋକଟି ଖସି ପଡିଲା ଏବଂ ତା ସାଥୀରେ ସମସ୍ତ ଗାଁ ଲୋକେ ତଳେ କଚାଡି ହୋଇ ପୋକ, ମାଛି ପରି ମରିଗଲେ। ଚକିଟି ପୁଣି ଉଡିଗଲା ସ୍ୱର୍ଗପୁରକୁ।







# ଚତୁର ବିଲୁଆ, ଭକୁଆ ବାଘ

(ନବରଙ୍ଗପୁର, ଗଣ୍ଡ ଲୋକ କଥା)

ଅଗନା ଅଗନି ବନସ୍ତରେ ବାଘଟିଏ ରହୁଥାଏ। ବାଘଟି ବହୁତ ବଳୁଆ ଥିଲା, ମାତ୍ର ଅତି ସରଳ ହେତୁ ସେ କାହାକୁ ହଠାତ୍ ଆକ୍ରମଣ କରିପାରେନା।

ଦିନେ ବାଘ ବଣରେ ଯାଉଥିବାବେଳେ ବାଟରେ ଏକ ବିଲୁଆକୁ ଦେଖିଲା। ସେତିକିବେଳେ ବିଲୁଆଟି ଗୋଟିଏ କୁକୁଡାକୁ ଧରି ଖାଉଥାଏ। ବାଘଟି କିନ୍ତୁ ଭାରି ଭୋକିଲା ଥିଲା। ସେ ଏତିକିବେଳେ ବିଲୁଆ ଓ ତା ସହିତ କୁକୁଡାକୁ ଦେଖି ବହୁତ ଖୁସି ହୋଇଗଲା। ଆଜି ତାକୁ

ଗାଁ ଲୋକଙ୍କ ଠେଙ୍ଗା ମାଡରେ ବାଘର ଗୋଡ ହାତରୁ ରକ୍ତ ବୋହୁଥାଏ। ବିଚରା ବାଘ ବହୁ କଷ୍ଟରେ ଜଙ୍ଗଲକୁ ଆସି ଦେଖିଲା ବେଳକୁ ବିଲୁଆ ତାର ବସି କୁକୁଡାତକ ଖାଇବାରେ ଲାଗିଛି। ଏହା ଦେଖି ବାଘର ରାଗ ପଞ୍ଚମକୁ ଚଢିଗଲା। ସେ ରାଗରେ ବିଲୁଆକୁ ଖାଇଦେବାକୁ ଉଦ୍ୟତ ହେଲା।

ବିଲୁଆ କହିଲା: ବାଘ ମାମୁଁ ଯାହା ତ ହେବାର ଥିଲା ହେଲା, ଆଉ ରାଗ ନାହିଁ। ମୁଁ ମାତ୍ର ଗୋଟିଏ କୁକୁଡା ଖାଇଛି। ବାକି କୁକୁଡାତକ ତମ ପାଇଁ ମୁଁ ଏହି ଗୁମ୍ଫା ଭିତରେ ରଖିଛି। ଆଗେ ଗୁମ୍ଫା ଭିତରକୁ ଯାଇ କୁକୁଡାତକ ଖାଇ ଶାନ୍ତ ହୋଇଯାଅ। ତା ପରେ ଯାଇ ଯାହା ଚିନ୍ତା କରିବ।

ଚତୁର ବିଲୁଆ ବାଘକୁ ଗୁମ୍ଫା ଭିତରକୁ ପଠେଇ ସେଠାରୁ ଖସି ଚାଲିଗଲା। ବାଘ ଗୁମ୍ଫା ଭିତରକୁ ପଶି ଦେଖିଲା ବେଳକୁ ଗୁମ୍ଫାରେ ଗୋଟିଏ ହେଲେ ବି କୁକୁଡା ନାହିଁ। ବାଘର ରାଗ ତ ପୁଣି ଚଢିଗଲା। ଏଥର ବିଲୁଆକୁ ମୃତ୍ୟୁ ମୁଖରୁ କେହି ବି ବଞ୍ଚେଇ ପାରିବେ ନାହିଁ ବୋଲି ବାଘ ରାଗରେ ଚିତ୍କାର କଲା। ହାରାମୀ ବିଲୁଆ ତାକୁ ଦୁଇ ଦୁଇ ଥର ଠକି ଦେଇ ଚାଲିଗଲାଣି।

ବିଲୁଆ ତାର ସବୁ କୁକୁଡାତକ ଖାଇ ଆରାମରେ ଯାଇ ଏକ ଶିଆଳି ଲତାର ଦୋଳିରେ ବସି ଝୁଲୁଥାଏ। ବାଘ ଖୋଜି ଖୋଜି ଯାଇ ବିଲୁଆ ନିକଟରେ ପହଞ୍ଚି ଗଲା। ବିଲୁଆ ଦୋଳିରେ ବସି ଝୁଲୁଥାଏ। ବାଘ ବିଲୁଆକୁ ଦୋଳିରେ ଝୁଲୁଥିବାର ଦେଖି ରାଗରେ ଗର୍ଜନ କରି ବିଲୁଆ ଉପରକୁ ଲମ୍ଫ ଦେଲା।

ରାଗିକି ବାଘ ବିଲୁଆକୁ କହିଲା: ଏଥର ଦେଖିବି ତୋତେ ମୋ ମୁହଁରୁ କିଏ ରକ୍ଷା କରିବ? ଆଉ ତୋର ଚାଲାକି କଥାରେ ଭଳିଯିବିନାହିଁ।

ଚତୁର ବିଲୁଆ ଅତି ବିନୟର ସହିତ କହିଲା: ବାଘ ମାମୁଁ ତମେ ଅଯଥାରେ ରାଗୁଛ। ମୁଁ ତମକୁ ଠକିନାହିଁ। ପ୍ରକୃତରେ ମୁଁ ସବୁତକ କୁକୁଡା ସେହି ଗୁମ୍ଫାରେ ରଖିଥିଲି। ବୋଧେ ତାହାକୁ ଅନ୍ୟ କେହି ଖାଇ ଦେଇଛି। ହଉ ଯାହା ହେବାର ତ ହେଲାଣି। ତମେ ଟିକେ ରାଗ ଶାନ୍ତ କର। ଏହି ଦୋଳିରେ ବସି ଝୁଲ ଓ ଥଣ୍ଡା ପବନ ଖାଅ। ମୁଁ ତମ ପାଇଁ ଅନ୍ୟ କେଉଁଠୁ କୁକୁଡା ଯୋଗାଡ କରୁଛି। ଟିକେ ଧୈର୍ଯ୍ୟ ଧର, ମୁଁ କେଉଁଠୁ ହେଲେ ବି ତମ ପାଇଁ କୁକୁଡା ଆଣିବାକୁ ଯାଉଛି।

ବିଲୁଆର ଚତୁର ଓ ନରମ କଥାରେ ବାଘ ପୁଣି ଭଳିଗଲା। ଯାଇ ଶିଆଳି ଲତାର ଦୋଳିରେ ବସିଲା। ଭଲ ଥଣ୍ଡା ପବନ ବହୁଥାଏ। ବାଘକୁ ଭଲ ଲାଗୁଥାଏ।

ବିଲୁଆ କହିଲା: ବାଘ ମାମୁଁ ତମେ ଏହି ଦୋଳିରେ ଝୁଲୁଥାଅ, ମୁଁ ଯାଉଛି ନିକଟ ଗାଁକୁ। ତମ ପାଇଁ ଗଣ୍ଡାଏ କୁକୁଡା ନେଇକି ଆସିବି। ବାଘ ବିଲୁଆର ଏହି ଚତୁର କଥାକୁ

ବିଶ୍ୱାସ କଲା । ଏହି ସମୟରେ ଚତୁର ବିଲୁଆ ଶିଆଳି ଲତାର ଦୋଳିକୁ ଦାନ୍ତରେ କାଟି ଅଧା ଛିଣ୍ଡା କରି ଚାଲିଯାଇଥାଲା ।

ବାଘ ଦୋଳିରେ ବସି ଝୁଲୁଥାଏ । ହଠାତ୍ ପବନ ଜୋରରେ ବହିଲା । ପବନ ଜୋରରେ ହେବାରୁ ଦୋଳିଟି ଛିଣ୍ଡିଗଲା ଏବଂ ବାଘ କଚାଡି ହୋଇ ପଡିଲା । ତାର ହାତଗୋଡ ଭାଙ୍ଗି ପୁଣି ଆହତ ହୋଇ ବିଲୁଆ ଉପରେ ରାଗରେ ନିଆଁବାଣ ହୋଇଗଲା ।

ବିଲୁଆ ଗାଁକୁ ଯାଇ ଏକ ମୋଚି ଘରେ ପଶିଗଲା । ମୋଚି ଘରେ ବହୁତ ବାଜା ଥିଲା । ସେଥି ମଧ୍ୟରୁ ଗୋଟିଏ ବାଜା ଭିତରେ ବହୁତ ବିରୁଡ଼ି ବସା କରିଥିଲେ । ବିଲୁଆ ସେହି ବାଜାଟିକୁ ନେଇ ଆଣି ବିରୁଡି ଯିବା ଆସିବା କରୁଥିବା ଜଣାରେ ଏକ ପାଳ ବିଣ୍ଡା ଭର୍ତ୍ତି କରି ଦେଲା ଏବଂ ସେହି ବାଜାକୁ ଜଙ୍ଗଲକୁ ନେଇ ଆସିଲା । ଗୋଟିଏ ଗଛମୂଳେ ବସି ବିଲୁଆ ସେହି ବାଜାକୁ ବଜାଉଥିଲା । ଏହି ସମୟରେ ବାଘ ଆସି ହାଜର ।

ବାଘ ଏଥର ଅଧିକ ରାଗି ଯାଇଥାଏ । କାରଣ ବିଲୁଆ ତାକୁ ବାରମ୍ବାର ଠକି ଚାଲିଛି । ଏଣୁ ବାଘ କହିଲା: ଏଥର ମୁଁ ତତେ ଖାଇବି ଏବଂ ତୋର ଆଉ କିଛି ଚତୁର କଥା ଶୁଣିବି ନାହିଁ ।

ବିଲୁଆ ବାଜା ବଜାଉଥିଲା । ବାଘକୁ ଦେଖି କହିଲା: ବାଘ ମାମୁଁ ଆଉ ମୋ ଉପରେ ରାଗ ନାହିଁ । ମୋତେ ଖାଇବ ପଛେ ଖାଅ । କିନ୍ତୁ ମୋତେ ଟିକେ ଏହି ବାଜା ବଜାଇବାକୁ ଦିଅ । ମୋ ବାପ ଅଜା ଅମଳର ଏହି ବାଜା ଟିକେ ବଜେଇ ମରିବି । ବାଜା ବଜେଇ ସାରିବା ପରେ ତମେ ମୋତେ ଖାଇବ ।

ବିଲୁଆ ପୁଣି ବାଘକୁ କହିଲା: ମାମୁଁ ତମେ ଏହି ବାଜା ଟିକେ ବଜେଇବକି । ଏହା ବହୁତ ଭଲ ବାଜୁଛି । ନେଉନ ଟିକେ ବଜେଇବ । ତା ପରେ ଯାଇ ମୋତେ ଖାଇବ । ବାଘ ପୁଣି ବିଲୁଆର ଚତୁର କଥାରେ ଭଳି ଗଲା । ବିଲୁଆ ପାଖରୁ ବାଜା ନେଇ କାନ୍ଧରେ ପକେଇଲା । ବାଜା ବଜେଇବାକୁ ଆରମ୍ଭ କଲା ।

ଏହି ସମୟରେ ବିଲୁଆ ଲୁଚିଲୁଚି ସେହି ବାଜାରେ ଦିଆଯାଇଥିବା ପାଳ ବିଣ୍ଡାକୁ ବାହାର କରି ଦେଇ ସେଠାରୁ କିଛି ଦୂରକୁ ଚାଲିଗଲା । ବାଘ ଯେମିତି ବାଜା ବଜେଇଛି, ବାଜା ଭିତରୁ ଯେତେ ବିରୁଡି ଥିଲେ ବାହାରିକି ବାଘକୁ ଫୋଡିବାରେ ଲାଗିଲେ । ବିରୁଡ଼ି ମାଡରେ ବାଘ ପୁଣି ଆହତ ହେଲା ଓ ପ୍ରାଣ ବିକଳରେ ଜଙ୍ଗଲ ଆଡକୁ ଧାଇଁଲା ।

ଏହି ସମୟରେ ବିଲୁଆ ସେଠାରୁ ପଳେଇ ଯାଇ ଜଙ୍ଗଲର ଏକ ପ୍ରାନ୍ତକୁ ଚାଲି ଯାଇଥିଲା । ବିଲୁଆ ଯାଇ ଜଙ୍ଗଲରେ ନିଆଁ ଲଗେଇ ଦେଲା ଏବଂ ସେଠି ଅପେକ୍ଷା କରି ରହିଲା । ଏହା ପରେ ବିଲୁଆଠାରୁ ପୁଣି ଠକାମିରେ ପଡି ବାଘ ରାଗରେ ସେଠାରେ ଆସି ପହଞ୍ଚିଲା । ବିଲୁଆ

ଉପରକୁ ଡେଇଁ ପଡି ତାକୁ ମାରିବାକୁ ଧରିଲା । କିନ୍ତୁ ଏହି ସମୟରେ ଜଙ୍ଗଲରେ ନିଆଁ ଲାଗିଥିବାର ଦେଖି ବାଘ ଭୟ ପାଇଗଲା ।

ବିଲୁଆ କହିଲା : ବାଘ ମାମୁଁ ଜଙ୍ଗଲରେ ତ ନିଆଁ ଲାଗି ଗଲାଣି। ଆମେ ସମସ୍ତେ ମରିବା । ତେଣୁ ତମେ ମୋତେ ଖାଇବ କ'ଣ। ଏହି ନିଆଁ କବଳରୁ କେମିତି ବଞ୍ଚିବା ତାହାର ଉପାୟ ଚାଲ କରିବା । ବାଘ ସତକୁ ସତ ଦେଖିଲା ଜଙ୍ଗଲରେ ନିଆଁ ଲାଗି ଯାଇଛି। ତେଣୁ ବିଲୁଆକୁ ଏହି ନିଆଁ କବଳରୁ କିପରି ରକ୍ଷା ପାଇବ ସେ ସମ୍ପର୍କରେ ଉପାୟ ବାହାର କରିବାକୁ କହିଲା ।

ବିଲୁଆ ତତ୍‌କ୍ଷଣାତ୍ ଶର୍ଗି ପତ୍ରରେ ଦୁଇଟି ବଡ଼ ବଡ଼ ଠୋଲା ପ୍ରସ୍ତୁତ କଲା ଏବଂ ବାଘ ମାମୁଁକୁ କହିଲା: ମାମୁଁ ଏହି କଞ୍ଚା ପତ୍ରର ଠୋଲାରେ ପଶିଗଲେ ନିଆଁ ଧାସ କାଟିବନି। ଏହି ଠୋଲାରେ ତମେ ଓ ମୁଁ ପଶି ଗଲାପରେ ଆମେ ଗଡିଗଡି ଜଙ୍ଗଲ ବାହାରକୁ ଚାଲିଯିବା। ବିଲୁଆର ଏହି କଥା ବାଘ ମନକୁ ପାଇଲା । ତେଣୁ ବିଲୁଆ ବଡ଼ବଡ଼ ଦୁଇଟି ଶର୍ଗି ପତ୍ରରେ ମୁଣା ପ୍ରସ୍ତୁତ କଲା । ପ୍ରଥମେ ଗୋଟିଏ ମୁଣା ଭିତରକୁ ବାଘ ମାମୁଁକୁ ପଶିବାକୁ କହିଲା । ବିଲୁଆ କହିଲା: ମାମୁଁ ତମେ ମୁଣା ବାହାର ବୁଜିବା ଜାଣି ନାହଁ। ତେଣୁ ତମେ ଆଗେ ମୁଣା ଭିତରକୁ ପଶ। ମୁଁ ତମ ମୁଣା ବାଟ ବନ୍ଦ କରିବା ପରେ ମୋ ମୁଣା ଭିତରକୁ ପଶିବି।

ବିଲୁଆର ଏହି ଚତୁର କଥାରେ ବାଘ ପୁଣି ଭଳିଗଲା । ବାଘ ଯେମିତି ଠୋଲା ଭିତରକୁ ପଶିଯାଇଛି ବିଲୁଆ ଠୋଲାର ବାହାର ମୁହଁ ବନ୍ଦ କରିଦେଲା । ଏବଂ ସେହି ଠୋଲାକୁ ନିଆଁ ଭିତରକୁ ଗଡେଇ ଦେଲା । ସେତେବେଳକୁ ଜଙ୍ଗଲରେ ନିଆଁ ଘୋଟି ସାରିଲାଣି। ନିଆଁ ରଡରେ କାଠସବୁ ଠୋ ଠା କରି ଫୁଟୁଥାଏ।

ବାଘ ସେହି ନିଆଁ ଭିତରକୁ ପଶି ପୋଡି ହୋଇ ମରିଗଲା । ବିଲୁଆ ସେଠୁ ଆରାମରେ ଦଉଡି ପଳେଇ ଆସିଲା । ଏମିତି ଭାବେ ଚତୁର ବିଲୁଆ ବାଘକୁ ଭକୁଆ କରି ତାର ଜୀବନ ନେଲା । ଚତୁର ବିଲୁଆ ଜୀଇଁଲା । ଭକୁଆ ବାଘ ମଲା । ମୋ କଥା ସରିଲା ।



ବାଘ ନଖାଇଲେ ବାର୍ହା ମଧ୍ୟ ଖାଉ ନଥିଲା କି ବର୍ହା ନ ଖାଇଲେ ବାଘ ମଧ୍ୟ ଓପାସ ରହୁଥିଲା ।

ଦୁହିଁଙ୍କଙ୍କର ଏମିତି ବନ୍ଧୁତ୍ୱ ଦେଖି ଜଙ୍ଗଲର ଅନ୍ୟ ସମସ୍ତ ପଶୁପକ୍ଷୀମାନେ ମଧ୍ୟ ଆଶ୍ଚର୍ଯ୍ୟ ପ୍ରକାଶ କରୁଥିଲେ। ବାଘ ଓ ବାର୍ହା ମଧ୍ୟରେ ବୃଦ୍ଧି ପାଉଥିବା ଏହି ମଧୁର ବନ୍ଧୁତ୍ୱ ସମ୍ପର୍କକୁ ବିଲୁଆ କିନ୍ତୁ ସହି ପାରିଲା ନାହିଁ। ଏ ଦୁହିଁଙ୍କ ଭିତରେ ଥିବା ସମ୍ପର୍କକୁ କିପରି ଭାଙ୍ଗି ନଷ୍ଟ କରି ଦେବ ସେକଥା ବିଲୁଆ ଚିନ୍ତା କରୁଥିଲା। ବାଘ ଓ ବାର୍ହା ମଧ୍ୟରେ ଥିବା ମିତ୍ରତାକୁ ଭାଙ୍ଗି ଦେଲେ ବିଲୁଆ ବାଘର ନିକଟତର ହୋଇପାରିବ ବୋଲି ଚିନ୍ତା କରୁଥିଲା ।

ଏଣୁ ବିଲୁଆ ପ୍ରଥମେ ବାର୍ହା ନିକଟକୁ ଗଲା। ବାର୍ହାକୁ କହିଲା: ବୁଢିଲ ବାର୍ହା ଦାଦି, ମୋତେ କାହିଁ କଥାଟା ଭଲ ଲାଗୁନି। ତମ ଭଳି ନିର୍ମାୟା ପ୍ରାଣୀ ବାଘ ଭଳି ଏକ ହିଂସ୍ର ଓ ଅବିଶ୍ୱାସୀ ପ୍ରାଣୀ ସହିତ କିପରି ମିତ୍ରତା କଲା ତାହା ମୋତେ କାହିଁ ଭଲ ଲାଗୁନି। ତାହା ଛଡା ମୁଁ ଯାହା ଶୁଣିଛି, ତମକୁ କହି ଦେଉଛି। ତେଣିକି ତମେ ଯାହା ଭଲ ଭାବିବ ତାହା କରିବ। ବାଘ ତମ ସହିତ କେବଳ ଲୋକ ଦେଖାଣିଆ ମିତ୍ରତା ରଖିଛି। ଭିତରେ ଭିତରେ ତମକୁ ମାରିବାକୁ ଯୋଜନା କରୁଛି। ମୁଁ ଏହା ଜାଣି ପାରିବା ପରେ ତମକୁ କହି ଦେବାକୁ ଉଚିତ୍ ମଣିଲି। ବାଘ ତମକୁ ମାରିବା ପାଇଁ ଅନ୍ୟ ବାଘ ଭାଇମାନଙ୍କୁ ଗଲା କାଲି କହୁଥିବାର ମୁଁ ଶୁଣିଛି। ତେଣୁ ଦାଦି ତମେ ବାଘ ପ୍ରତି ସତର୍କ ଥିବ। ଏମିତି କଥା କହି ବିଲୁଆ ବାର୍ହାର ମୁଣ୍ଡକୁ ଖରାପ କରିଦେବାକୁ ଚେଷ୍ଟା କଲା ।

ପ୍ରଥମେ ବାର୍ହା ବିଲୁଆ କଥାକୁ ବିଶ୍ୱାସ କଲାନି। ବାର୍ହା କହିଲା: ବାଘ ବହୁତ ଭଲ ପ୍ରାଣୀ। ସେ କେବେ ବି ମୋତେ ମାରିବାକୁ ଚିନ୍ତା କରୁ ନଥିବ। ଆମେ ଦୁହେଁ ଭଲ ବନ୍ଧୁ। ବିଲୁଆ ଏହା ଶୁଣି କହିଲା: ହଉ ଦାଦି, ଆଜି ମୋ କଥା ବିଶ୍ୱାସ ହେଉନି, କାଲିକୁ ବଳେ ଜାଣିଯିବନି। ଏହା କହି ବିଲୁଆ ସେଠାରୁ ଚାଲିଗଲା ।

ବିଲୁଆର ଏହି କଥା ଶୁଣି ବାର୍ହା କିଛି ମାତ୍ରାରେ ବ୍ୟସ୍ତ ଓ ଚିନ୍ତିତ ହୋଇ ପଡିଲା। ବିଲୁଆ କଥାରେ କିଛି ସତ୍ୟତା ଥାଇପାରେ ବୋଲି ବାର୍ହା ଚିନ୍ତା କଲା। କ୍ରମେ ତା ମୁଣ୍ଡରେ ବାଘ ସମ୍ପର୍କରେ ବାଜେ ଚିନ୍ତା ଘାରିବାକୁ ଲାଗିଲା। ବାଘ ଉପରେ ତାର ଅବିଶ୍ୱାସ ଆରମ୍ଭ ହେଲା। ଏହା ପରେ ବିଲୁଆ ଯାଇ ବାଘ ପାଖରେ ପହଞ୍ଚିଲା ।

ବାଘ ପାଖରେ ପହଞ୍ଚି ଏକ ଲମ୍ବା ନମସ୍କାର କରି କହିଲା: ବାଘ ମାମା, ମୁଁ ଯେଉଁ ଖବର ଶୁଣିଲି ତାହା କ'ଣ ସତ୍ୟ? ବାଘ ମାମା କହିଲା: କି ଖବର? ବିଲୁଆ କହିଲା: ବାଘ ମାମା ଭଳି ଜଙ୍ଗଲର ଏକ ଶକ୍ତିଶାଳୀ ଜୀବ ଛାର୍ ବାର୍ହା ସାଙ୍ଗରେ ମିତ୍ର ବସିଛି। ହଁ ଯେଉଁ ମିତ୍ର ପାଇଁ ତମେ ଦିନ ରାତି ଚିନ୍ତା କରୁଛ, ଅସଲରେ ସେ ତମର ଚେର କାଟୁଛି। ତମକୁ ମାରିବା ପାଇଁ ବାର୍ହା ଏକ ବିଧିବଦ୍ଧ ଯୋଜନା କରୁଛି। ଏହା ମୁଁ ବିଶେଷ ସୂତ୍ରରୁ ଖବର ପାଇଲି।



ବାଘ ବିଲୁଆର ଏହି ଫାଲ୍‌ତୁ କଥା ଶୁଣି ଅଧିକ ରାଗିଗଲା । କହିଲା: ବିଲୁଆ, ତୁ ଗୋଟା ଠକ। ବାର୍ହା କେବେ ବି ମୋର ଅନିଷ୍ଟ ଚିନ୍ତା କରିବ ନାହିଁ। ସେ ମୋର ସାଙ୍ଗ। ବିଲୁଆ କହିଲା: ହଉ ମାମା, ତମକୁ ମୋ କଥା ଆଜି ଗନ୍ଧଉଛି। ବଳେ କାଲିକୁ ବାସିବନି! ଦେଖିବ ନେଡି ଗୁଡ କହୁଣୀକୁ ବୋହିଗଲା ପରେ ମୋ କଥା ସେତେବେଳକୁ ମନେ ପକାଉଥିବ। ବାର୍ହା ତାଙ୍କର ସମସ୍ତ ଜାତି ଭାଇକୁ ମେଳେଇ ତମ ବିରୋଧରେ ଷଡଯନ୍ତ୍ର କରୁଛି।

ବିଲୁଆ କଥା ଶୁଣି ବାଘର ବାର୍ହା ପ୍ରତି ସନ୍ଦେହ ଜାତ ହେଲା। ସେ କିଛି ସମୟ ନିରବ ରହିବାରୁ ବିଲୁଆ ସେଠାରୁ ଚାଲିଗଲା। ବିଲୁଆ ଦୁହିଁଙ୍କୁ ଦୁହିଁଙ୍କ ବିରୋଧରେ କହି ଏକ ପ୍ରକାର ସଫଳ ହୋଇଗଲା। ଏହା ପରେ ବାଘ ଆଉ ବାର୍ହା ପାଖକୁ ଆସିଲା ନାହିଁ କି ବାର୍ହା ଆଉ ବାଘ ପାଖକୁ ଗଲା ନାହିଁ। ଦୁହେଁ ଦୁହିଁଙ୍କ ପ୍ରତି ରାଗରେ ନିଆଁବାଣ ହୋଇଗଲେ। ଏମିତି ପରିସ୍ଥିତି ସୃଷ୍ଟି ହେଲା, ବାର୍ହାର ଛାଇ ପଡିଲେ ବାଘର ନାହି ଜ୍ୱେଇଁଲା ଏବଂ ବାଘ କଥା କାନରେ ପଡିଲେ ବାର୍ହା ରାଗରେ ପାଚି ଯାଉଥିଲା।

ଦିନେ ଦୁହେଁ ପରସ୍ପର ପରସ୍ପରକୁ ଜଙ୍ଗଲରେ ଭେଟିଲେ। ପୂର୍ବ କଥାକୁ ନେଇ ଦୁହିଁଙ୍କ ଭିତରେ ଝଗଡା ଲାଗିଲା। ଏହି ଝଗଡା ଏମିତି ରୂପ ନେଲା ଯେ, ଦୁହେଁ ମାଡଗୋଳ ଲାଗିଗଲେ। ବାଘ ବାର୍ହା ଉପରକୁ କୁଦି ପଡି ତାକୁ ଖଣ୍ଡିଆ ଖାବରା କରି ପକେଇଲା। ବାର୍ହା ବାଘର ଏପରି ଆକ୍ରମଣର ଉଚିତ୍ ଜବାବ୍ ଦେବାକୁ ପଛେଇଲା ନାହିଁ। ସେ ମଧ୍ୟ ବାଘ ଉପରେ ପ୍ରତି ଆକ୍ରମଣ କଲା। ବାର୍ହା ତ ସେତେବେଳକୁ ରାଗରେ ନିଆଁ ବାଣ ହୋଇ ସାରିଥାଏ। ତେଣୁ ସେ ବାଘକୁ ଗଡେଇ ପଡେଇ ଲାତ ଗୋଇଠା ମାରି ବାଘକୁ ଅଚଳ କରି ପକେଇଲା। ଦୁହେଁ ଘମାଘୋଟ ଲଢେଇରେ ମାତି ଥାନ୍ତି। ବିଲୁଆ ଏହାକୁ ବସି ଦେଖି ମଜା ନେଉଥାଏ। ବିଲୁଆ ଏକ କଟା ବାହାଡା ଗଛ ଉପରେ ବସି ଦୁହିଁଙ୍କ ଭିତରେ ଲଢେଇ ଦେଖୁଥାଏ। ଏଣେ ବାଘ ଓ ବାର୍ହା ଭିତରେ ଲଢେଇ ଏତେ ଘମାଘୋଟ ହୋଇଗଲା, ଦୁହେଁ ଏହି ଲଢେଇରେ ଶେଷରେ ପ୍ରାଣ ହରାଇଲେ। ବିଲୁଆ ଏହା ଦେଖି ମଜା ଉଠାଉଥାଏ। ବାଘ ଓ ବାର୍ହାର ମୃତ ଦେହ ସେଠାରେ ପଡିଥାଏ।

ବିଲୁଆ ଯେଉଁ କଟା ବାହାଡା ଗଛର ଗଣ୍ଡି ଉପରେ ବସି ବାଘ ଓ ବାର୍ହାଙ୍କର ଏହି ଖେଳ ଦେଖୁଥିଲା, ସେହି ଗଛରେ ଏତେ ଅଠା ଥିଲା ଯେ, ବିଲୁଆ ତାହା ଜାଣି ପାରି ନଥିଲା। ଯେତେବେଳେ ବିଲୁଆ ସେଠାରୁ ଉଠିଯିବାକୁ ଚେଷ୍ଟା କଲା, ଆଉ କି ସେ ଉଠିପାରେ? ସେ ସେହି ଅଠାରେ ଲାଗି ରହିଲା। ଯେତେ ଚିତ୍କାର କଲେ ବି ସେ ସେଠାରୁ ଆଉ ଘୁଞ୍ଚି ପାରିଲା ନାହିଁ। ଏହି ସମୟରେ ସେହି ଜଙ୍ଗଲକୁ ଜଣେ ଶିକାରୀ ଧନୁ ତୀର ଧରି ଆସୁଥିଲା। ପ୍ରଥମେ ସେ ବାଘ ଓ ବାର୍ହାର ମୃତ ଶରୀର ଦେଖି ଅଧିକ ଖୁସି ହୋଇଗଲା। ଶିକାରୀ ବାଘ ଓ ବାର୍ହାକୁ ନେଉଥିବାବେଳେ ତାର ବିଲୁଆ ଉପରେ ନଜର ପଡ଼ିଗଲା। ତାକୁ ଆଉ ଏକ

ଶିକାର ମିଳିଯିବାରୁ ସେ ଆନନ୍ଦରେ ବିଭୋର ହୋଇଗଲା । ସେ ଡେରି ନକରି ବିଲୁଆକୁ ମାରି ଦେଲା ।

ବିଲୁଆ ଯଦି ସେ ଅଠାରେ ଲାଗି ଯାଇ ନଥାନ୍ତା ତେବେ ସେ ଶିକାରୀ କବଳରୁ ଖସି ଚାଲି ଯାଇ ପାରିଥାନ୍ତା । କିନ୍ତୁ ବିଲୁଆ ପର ପାଇଁ ଗାତ ଖୋଳୁଥିବାରୁ ସେ ନିଜେ ସେଇ ଗାତରେ ପଡିଲା । ପର ପାଇଁ ଅନିଷ୍ଟ ପାଞ୍ଚୁଥିବା ବିଲୁଆ ଶେଷରେ ନିଜେ ମଲା ।







# ବୁଢ଼ାବୁଢ଼ି

(ନବରଙ୍ଗପୁର, କନ୍ଧ ଲୋକ କଥା)

ଗୋଟିଏ ଗାଁରେ ବୁଢା ବୁଢି ଦୁହେଁ ବେଶ୍ ହସଖୁସିରେ ରହୁଥିଲେ। ବୁଢା ଓ ବୁଢି ଦୁହେଁ ସାଙ୍ଗ ହୋଇ ଜଙ୍ଗଲ ଯାଆନ୍ତି। ଜଙ୍ଗଲରୁ କାଠ ସଂଗ୍ରହ କରି ଆଣି ତାକୁ ବିକି ସେମାନେ ପେଟ ପୋଷନ୍ତି।

ଦିନେଦିନେ ବୁଢା ଏକୁଟିଆ ଜଙ୍ଗଲକୁ ଯାଏ। ଜଙ୍ଗଲରୁ ବଢିଆ ବଢିଆ କୁକୁଡା ଆଣେ ଓ ବୁଢି ତାକୁ ବଢିଆ ତର୍କାରୀ କରି ବୁଢାକୁ ଖାଇବାକୁ ଦିଏ। ଏମିତି ହସିଲା ଫୁରିଲା ଭାବେ ତାଙ୍କ ସଂସାର ଚାଲିଥାଏ।

ବୁଢା, ବୁଢୀର ଗୋଟିଏ ବୋଲି ଝିଅ ପାଖ ଗାଁରେ ବାହା ହୋଇ ସେ ତାର ସଂସାର ସହ ଭଲରେ ଥାଏ।

ଦିନେ ବୁଢା, ବୁଢି ସାଙ୍ଗ ହୋଇ ଝିଅ ଘରକୁ ବୁଲି ବାହାରିଲେ। ଚାଲି ଚାଲି ବୁଢାବୁଢି ଯାଇ ଦିନ ବାରଟା ବେଳେ ଝିଅ ଘରେ ପହଞ୍ଚିଲେ। ଝିଅ ବାପା, ବୋଉଙ୍କୁ ଦେଖି ଭାରି ଖୁସି



# ସାତ ଭାଇ ଓ ଭଉଣୀ କାହାଣୀ

(ରାୟଗଡା, କନ୍ଧ ଲୋକ କଥା)

ଜଙ୍ଗଲରେ ଗୋଟିଏ ମାୟାବୀ ଅସୁର ରହୁଥିଲା। ସେ ଅନେକ ସମୟରେ ବାର୍ଦ୍ଧା ରୂପ ଧାରଣ କରି ଜଙ୍ଗଲରେ ବୁଲେ।

ନିକଟ ଗାଁରେ ଗୋଟିଏ କନ୍ଧ ପରିବାରର ସାତ ଭାଇ ଓ ତାଙ୍କର ଅଲିଅଳ ଭଉଣୀ ରହୁଥିଲେ। ଛଅ ଭାଇ ବଡ଼ବଡ଼ ଥିଲାବେଳେ ସବା ସାନ ଭାଇଟି ଛୋଟ ପିଲା ଥିବାରୁ ସେ ସବୁବେଳେ ଘରେ ଭଉଣୀ ସହିତ ରହୁଥିଲା। ଏହି ମାୟାବୀ ଅସୁରଟି ଏହି ଭାଇମାନଙ୍କୁ ଖାଇବାକୁ ଯୋଜନା କଲା।

ଏହି ଭାଇ ଭଉଣୀ ଦୁହେଁ ଅସୁର ରୂପୀ ଲୋକଟି ଘରେ ରହିଲେ। ଅସୁର ଏଣେ ଏହି ଝିଅଟିକୁ ଦେଖି ତାକୁ ବାହା ହେବାକୁ ପାଗଳ ହୋଇ ଗଲାଣି। ତେଣୁ ସେ ସାନ ଭାଇଟିକୁ ମାରିଦେବାକୁ ଜଙ୍ଗଲକୁ ଡାକିନେଲା।

କଙ୍କଡା ଧରିବାକୁ ଜଙ୍ଗଲକୁ ଗଲେ। ଲୋକଟି ସାଙ୍ଗେସାଙ୍ଗେ ଉଭାନ୍ ହୋଇଯାଇ ନିଜେ କଙ୍କଡା ରୂପ ଧାରଣ କରି ଗୋଟିଏ ଗାତରେ ଛକି ରହିଲା। ପିଲାଟି କଙ୍କଡା ଧରିବାକୁ ଯାଇ ତାର ଦୁଇ ଆଖିକୁ ଯେମିତି ତାଡି ଦେଇଛି ଅସୁରଟି ଚିତ୍କାର କରି ସେଇଟି ମରିଗଲା। ଅସୁରଟି ମରିଗଲାବେଳେ ସେ ତାର ପୂର୍ବ ବାର୍ହା ରୂପ ଫେରିପାଇଲା। ସଙ୍ଗେସଙ୍ଗେ ସେଠାରେ ଭଉଣୀ ଆସି ପହଞ୍ଚିଗଲା।

ସେମାନେ ବାର୍ହାଟିକୁ ମାରି ତା ପେଟ ଚିରି ଦେଖିଲା ବେଳକୁ ତାଙ୍କର ଛଅ ଭାଇ ଥିଲେ। ସଙ୍ଗେସଙ୍ଗେ ବାର୍ହା ପେଟରୁ ଛଅ ଭାଇଙ୍କୁ ଉଦ୍ଧାର କଲେ। ଏବଂ ସମସ୍ତେ ମିଶି ପୁଣି ଘରକୁ ଫେରିଲେ।







# ହଳିଆ ଓ ସୁନାରୀ କାହାଣୀ

(ନବରଙ୍ଗପୁର ଭତରା ଲୋକକଥା)

ଜଣେ ସାଉକାର୍ ଘରେ ହଳିଆଟିଏ କାମ କରୁଥିଲା। ଦିନେ ହଳ କରୁକରୁ ହଳିଆଟି ଗୋଟିଏ ସୁନା ମୁଣ୍ଡା ପାଇଲା। ସୁନା ମୁଣ୍ଡାଟିକୁ ପାଇଲା ପରେ ହଳିଆ ନିଜ ଘରକୁ ନେଇ ଆସିଲା। ସୁନା ମୁଣ୍ଡା ପାଇବା ପରେ ହଳିଆର ଖୁସି କହିଲେ ନସରେ। ଆଉ କିଛି ଦିନ ପରେ ସେ ବି ସାଉକାର୍ ହୋଇଯିବ। ଏଇ ଖୁସିରେ ତାର ଗୋଡ଼ ତଳେ ଲାଗୁ ନଥାଏ।

ସେଦିନ ବଡ଼ି ଭୋରୁ ଭୋରୁ ହଳିଆ ସୁନା ମୁଣ୍ଡାଟିକୁ ଏକ ବ୍ୟାଗରେ ପୂରେଇ ସୁନାରୀ ଘର ଅଭିମୁଖେ ଗଲା। ସକାଳୁ ସକାଳୁ ସୁନାରୀ ହଳିଆକୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲା। ସୁନାରୀ ହଳିଆକୁ ଟାପରା କରି କହିଲା: କିହୋ, ହଳିଆ ଭାଇ କ୍ଷେତକୁ ନଯାଇ ଭୁଲରେ

ଏଠାକୁ ଚାଲି ଆସିଲକି?

ହଳିଆ କହିଲା: କି କହିବି, ସୁନାରୀ ଭାଇ। ମୋର ଏଇ ପୁରୁଣା ସୁନା ମୁଣ୍ଡାଟିକୁ ତମ ପାଖକୁ ଓଜନ କରିବାକୁ ଆସିଛି। କେତେ ହେଲା, ଓଜନ କରି କହିଦେଲେ ମୁଁ ପୁଣି ଫେରିଯିବି।

ହଳିଆ ପାଖରେ ଏତେ ସୁନା ଦେଖି ସୁନାରୀର ମୁଣ୍ଡ ଘୂରେଇ ଦେଲା। ସେ ହଳିଆ ପାଖରୁ ଏହି ସୁନାକୁ କେମିତି ହଡ଼ପ କରିବ ସେ କଥା ଚିନ୍ତା କଲା।

ହଳିଆ ଯେମିତି ସୁନା ମୁଣ୍ଡାଟିକୁ ସୁନାରୀକୁ ଦେଇଛି, ସୁନାରୀ ଏଇ ସୁନା ମୁଣ୍ଡାଟିକୁ ନେଇ ତାର ସ୍ତ୍ରୀକୁ ଦେଇ ଦେଲା ଓ ଚୁପ୍‌ଚାପ୍ ତା ନିଜ କାମରେ ଲାଗିଲା। ସ୍ତ୍ରୀ ଏହି ସୁନା ମୁଣ୍ଡାଟିକୁ ନେଇ ତା ସିନ୍ଦୁକରେ ରଖିଦେଲା।

ବହୁ ସମୟ ଗଲା। ସୁନାରୀ ଆଉ ହଳିଆକୁ ସୁନା ଫେରେଇଲା ନାହିଁ।

ହଳିଆ କହିଲା: କିହୋ, ସୁନାରୀ ଭାଇ, ମୋର ସୁନାତକ କେତେ ଓଜନ ହେଲା କୁହ ଭଲା, ମୁଁ ତେଣେ ବିଲକୁ ଯିବି। ବିଳମ୍ବ ହୋଇଗଲାଣି।

ହଳିଆର ଏହି କଥା ଶୁଣି ସୁନାରୀ ଶୁଣି ନଶୁଣିଲା ପରି ବ୍ୟବହାର କଲା ଏବଂ କହିଲା: କି ସୁନା? ତମ ଭଳି ଭିକାରୀ ହଳିଆର ପୁଣି କି ସୁନା? ଯାଅ, ଯାଅ ଏଠୁ ପଳେଇ ଯାଅ। ନ ହେଲେ ପୁଲିସ ଲଗେଇ ତମକୁ ବିଦା କରିଦେବି।

ସୁନାରୀର ଏ ଟାଉଟରୀ କଥା ଶୁଣି ହଳିଆର ରାଗ ବଢିଗଲା।

ହଳିଆ କହିଲା: ଶୁଣ, ସୁନାରୀ ମୋ ସାଙ୍ଗରେ ଥଟ୍ଟା କରନାହିଁ, ମୋ ସୁନାତକ ଫେରେଇ ଦିଅ, ମୁଁ ଚାଲିଯିବି।

ସୁନାରୀ କିଛି ନଶୁଣି ହଳିଆକୁ ଧକା ମାରି ବିଦା କରିଦେଲା। ଏବଂ ଯାଇ ରାଜାଙ୍କ ପାଖରେ ହଳିଆ ବିରୋଧରେ ଫେରାଦ ହେଲା।

ସୁନାରୀ ରାଜାଙ୍କ ନିକଟକୁ ଯାଇ କହିଲା: ମଣିମା, ଏହି ଭିକାରୀ ଚତୁର ହଳିଆ ଜଣକ ମହା ଠକ। ମୁଁ କୁଆଡେ ତା ସୁନା ନେଇ ଯାଇଛି ବୋଲି ମିଛରେ କହୁଛି। ଏହା କହିବା ପରେ ସେ ମୋ ସ୍ତ୍ରୀ ପ୍ରତି ବଳାତ୍କାର କରିବା ସହିତ ମୋତେ ମାରଧର କରିଛି। ଆପଣ ତାକୁ ଶାସ୍ତି ଦିଅନ୍ତୁ ମଣିମା। ତାର କେଉଁଠୁ ଏତେ ସୁନା ଆସିବ ମଣିମା, ଆପଣ ବିଚାର କରନ୍ତୁ।

ହଳିଆ ମଧ୍ୟ ରାଜାଙ୍କ ନିକଟକୁ ଯାଇଥିଲା। ହଳିଆ ରାଜାଙ୍କ ନିକଟକୁ ଯାଇ ତାଙ୍କ କାନରେ ଫୁସଫୁସ କରି କ'ଣ କହିଦେଲା। ହଳିଆର କହିବା ଅନୁଯାୟୀ, ରାଜା ସୁନାରୀକୁ ଦରବାରରେ ଅଟକ ରଖି ତାଙ୍କର ଜଣେ କର୍ମଚାରୀଙ୍କୁ ସୁନାରୀ ଘରକୁ ପଠେଇଲା।

ରାଜ କର୍ମଚାରୀ ସୁନାରୀ ଘରେ ପହଞ୍ଚି ସୁନାରୀ ସ୍ତ୍ରୀକୁ ପଚାରିଲେ: ମୁଁ ରାଜାଘର

ଗୁମାସ୍ତା । ତମ ସ୍ୱାମୀ ରାଜାଙ୍କ ଘରେ ଥାଇ ମୋତେ ତମ ପାଖକୁ ପଠେଇଛନ୍ତି । ତମ ସ୍ୱାମୀ ଯେଉଁ ସୁନା ମୁଣ୍ଡାଟିକୁ ତମକୁ ରଖିବାକୁ ଦେଇଥିଲେ, ସେଇଟାକୁ ମୋତେ ଦେବାକୁ ତମ ସ୍ୱାମୀ କହିଛନ୍ତି । ତେଣୁ ସେ ମୋତେ ତମ ପାଖକୁ ପଠେଇଛନ୍ତି ।

ଗୁମାସ୍ତାର ଏହି କଥା ଶୁଣି ସୁନାରୀର ସ୍ତ୍ରୀ ବିଶ୍ୱାସର ସହିତ ତାଙ୍କୁ ଏହି ସୁନା ମୁଣ୍ଡାଟିକୁ ଦେଇଦେଲା ।

ଗୁମାସ୍ତା ଏହି ସୁନା ମୁଣ୍ଡାଟିକୁ ଧରି ରାଜ ଦରବାରରେ ପହଞ୍ଚିଲା । ଗୁମାସ୍ତା ହାତରୁ ସୁନା ମୁଣ୍ଡା ଦେଖି ରାଜା ଆଶ୍ଚର୍ଯ୍ୟ ହୋଇଗଲେ । ହଳିଆ ତାର ସୁନା ମୁଣ୍ଡାଟିକୁ ଚିହ୍ନି ପାରିଲା ଏବଂ ସୁନାରୀ ଏହା ଦେଖି ତାର ଅକଲ ଗୁଡୁମ୍ ହୋଇଗଲା । ରାଜା ସବୁ କଥା ଜାଣିପାରିଲେ । ସୁନାରୀ ମଧ୍ୟ ତାର ଦୋଷ ମାନିଲା ।

ରାଜା ରାଗିଯାଇ ସୁନାରୀକୁ ଶୂଳିରେ ବସେଇଦେଲେ ଏବଂ ହଳିଆର ବୁଦ୍ଧି ପାଇଁ ତାଙ୍କୁ ତାଙ୍କର ମନ୍ତ୍ରୀ କରେଇ ଦେଲେ । ହଳିଆ ତାର ନିଜ ବୁଦ୍ଧି ପାଇଁ ରାଜାଙ୍କର ମନ୍ତ୍ରୀ ହୋଇପାରିଲା ।







# ଶାଶୂ ବୋହୂ କାହାଣୀ

(କୋରାପୁଟ, ପରଜା ଲୋକ କଥା)

ଗୋଟିଏ ଗାଁରେ କମାର ଘରଟିଏ ଥାଏ। ସେହି କମାର ଘରେ ବିଧବା କମାରୁଣୀଟିଏ ଥାଏ ଏବଂ ତାର ପୁଅଟିଏ ଥାଏ। ମା ପୁଅ ଦୁହେଁ ବେଶ୍ ହସଖୁସିରେ ଚଳୁଥାନ୍ତି। ଦିନକୁ ଦିନ କମାରୁଣୀ ବୁଢିଟି ଅଧିକ ବୁଢି ହୋଇଯିବାରୁ କାମଧନ୍ଦା କରି ପାରିଲା ନାହିଁ। ଭାବିଲା ପୁଅକୁ ବିଭା କରି ଦେବ। ତେଣୁ ସେ ବହୁତ ଖୋଜି ଖୋଜି ପୁଅ ପାଇଁ ସୁନ୍ଦରୀ ବୋହୂଟିଏ ଯୋଗାଡ଼ କଲା। ବୋହୂଟି ବେଶ୍ ସୁନ୍ଦରୀ ଥିବାରୁ କମାରୁଣୀ ବୁଢିଟି ଭାରି ଗର୍ବ କରୁଥିଲା। କିନ୍ତୁ ଅଳ୍ପ କିଛି ଦିନ ପରେ ଏହି ଖୁସି ଆଉ ରହିଲା ନାହିଁ। କମାରୁଣୀ ବୁଢିଟି ଭାବିଥିଲା ବୋହୂ ଆସିବା ପରେ ସେ ଆଉ କାମଧନ୍ଦା କରିବ ନାହିଁ, ବୋହୂ ପାଖରୁ ଘସାମୋଡା

ଏହା ପରେ କମାରୁଣୀ ପୁଅ ଶାଶୂ, ଶ୍ୱଶୁରଙ୍କୁ ଆଣିବାକୁ ଗଲା । ଶାଶୂ, ଶ୍ୱଶୁର ସମୁଦୁଣୀ ମରି ଯାଇଥିବା କଥା ଶୁଣି ବହୁତ ମନ ଦୁଃଖ କଲେ ଏବଂ ମନେ ମନେ ବହୁତ ଖୁସି ହେଲେ । ଯାହା ହେଉ ତାଙ୍କ ଝିଅ ଏଥର ଭଲରେ ଚଳିବ । ସେ ଏଥର ଘରର ମାଲିକାଣି ହୋଇଯିବ । ଏମିତି ଭାବୁଭାବୁ ସେମାନେ ଅତି ଖୁସି ହୋଇ ଜ୍ୱାଇଁ ସାଙ୍ଗରେ ଝିଅ ଘରକୁ ବୁଲିଯିବାକୁ ରାଜି ହେଲେ । ତା ପରେ ଶାଶୂ, ଶ୍ୱଶୁର, ଜ୍ୱାଇଁ ମିଶି ଘରକୁ ଆସିଲେ । ବାଟରେ ଏକ ନଈ ପଡିଲା । ନଈଟିରେ ବଢି ପାଣି ଆସିଥିବାରୁ ବୁଢା, ବୁଢି ଦୁହେଁ ଆସିବାକୁ ଡରିଲେ । କମାରୁଣୀ ପୁଅ ତାଙ୍କୁ କାନ୍ଧେଇ କାନ୍ଧେଇ ଆଣି ନଈ ମଝିରେ ଛାଡି ଦେଲା । ଶାଶୂ, ଶ୍ୱଶୁର ବୁଡି ମରିଗଲେ ।

କମାରୁଣୀ ପୁଅ ଘରକୁ ଫେରି ସ୍ତ୍ରୀକୁ କହିଲା : ତମ ବାପା, ବୋଉ ବଢିରେ ଭାସି ଯାଇ ମରି ଯାଇଛନ୍ତି । ଏହା ଶୁଣି କମାରୁଣୀ ପୁଅର ସ୍ତ୍ରୀ କାନ୍ଦିବାକୁ ଲାଗିଲା । ବୁଢୀର ଦଶାହ ସମୟ ଆସି ପହଞ୍ଚିଲା । ପୁଅ ବାର୍ହାଟିକୁ କାଟି ମାଂସ ରାନ୍ଧିଲା ଓ ପଡୋଶୀମାନଙ୍କୁ ଡାକି ଖାଇବାକୁ ଦେଲା । ଯେତେବେଳେ ମାଂସ ତର୍କାରୀ ଖାଇବାକୁ କମାରୁଣୀ ପୁଅର ସ୍ତ୍ରୀ ବସିଛି, ଏହି ସମୟରେ ସେ ମାଂସ ତର୍କାରୀ କାନ୍ଦିବାକୁ ଲାଗିଲା । କ'ଣ ହୋଇଛି, କ'ଣ ହୋଇଛି ଜାଣିବାକୁ ଚେଷ୍ଟା କରିବାରୁ କମାରୁଣୀ ପୁଅର ସ୍ତ୍ରୀ କାନ୍ଦି କାନ୍ଦି ଶାଶୂକୁ ତଣ୍ଟି ଚିପି ମାରି ଦେଇଛି ବୋଲି ମାନିଗଲା । ଏହି ସମୟରେ ମାଂସ ତର୍କାରୀର ଝୋଳ ଭାସି ଯାଇ କମାରୁଣୀ ପୁଅ ଦେହରେ ଲାଗିଗଲା । କମାରୁଣୀ ପୁଅ ଦେହରେ ମାଂସ ଝୋଳ ବଢି ପାଣି ଭଳି ଲାଗିଗଲା । ସେ ବି କାନ୍ଦି କାନ୍ଦି ଶାଶୂ, ଶ୍ୱଶୁରଙ୍କୁ ନଦୀରେ ଭସେଇ ଦେଇ ମାରିଛି ବୋଲି ମାନିଲା । ଦୁହେଁ ବହୁତ କନ୍ଦାକଟା କଲେ । ଦୁହେଁ ଦୁହିଁଙ୍କ ଦୋଷ ବୁଝିପାରି ମନ ଦୁଃଖ କରି ରହିଲେ ।





ଘରେ ତାସ୍ ଖେଳରେ ମାତିଲେ। ମଦ ପିଇ ସବୁବେଳେ ନାଚଗୀତରେ ମାତି ଉଠିଲେ। ଏଣେ ବାସୁରୀ ମାକୁ ସମ୍ପୂର୍ଣ୍ଣ ଭାବେ ଭୁଲିଗଲେ।

ବାସୁରୀ ମା କୋୟମାନଙ୍କର ଏପରି ଅଳସୁଆମୀ ଦେଖି ଦୁଃଖ ପ୍ରକାଶ କଲେ। ସେମାନଙ୍କୁ ଉଚିତ୍ ଶିକ୍ଷା ଦେବା ପାଇଁ ଚିନ୍ତା କଲେ। ବାସୁରୀ ମା ଦିନେ ସ୍ୱର୍ଗପୁରକୁ ଯାଇ ଭାଇ ଧର୍ମ ଦେବତାଙ୍କୁ କୋୟମାନଙ୍କର ଅଳସୁଆମୀ ସମ୍ପର୍କରେ କହିଲେ। ଧର୍ମ ଦେବତା ମଧ୍ୟ ଏକଥା ଶୁଣି ମନ ଧୁଃଖ କଲେ। ସେ ସ୍ଥିର କଲେ ଇନ୍ଦ୍ର ଦେବତାଙ୍କ କହି ବର୍ଷା ବନ୍ଦ କରିଦେବେ। ଫଳରେ ମରୁଡ଼ି ପଡ଼ିବ ଏବଂ ଖାଇବାକୁ ନ ପାଇ କୋୟମାନେ ପୁଣି ବାଟକୁ ଆସିବେ।

ଧର୍ମ ଦେବତାଙ୍କ କଥା ରକ୍ଷା କରି ଇନ୍ଦ୍ର ଦେବତା ବର୍ଷା କଲେ ନାହିଁ। ବର୍ଷେ ଗଲା, ଦୁଇ ବର୍ଷ ଗଲା। ବର୍ଷା ହେଲା ନାହିଁ। ଫସଲ ମରୁଡ଼ି ପଡ଼ିଲା। କୋୟମାନେ ଆଉ ଖାଇବାକୁ ପାଇଲେ ନାହିଁ। ଘରେ ଯାହା ଖାଦ୍ୟ, ଶସ୍ୟ ଥିଲା ତାହା କ୍ରମେ ସରିଗଲା। ଭୋକ ଉପାସରେ କୋୟମାନେ ହା ଅନ୍ନ ଚିତ୍କାର କଲେ। ଖାଇବାକୁ ନ ପାଇବାରୁ କୋୟମାନଙ୍କର ପୁଣି ବାସୁରୀ ମା କଥା ମନେ ପଡ଼ିଲା। କୋୟମାନେ ପୁଣି ବାସୁରୀ ମାଙ୍କୁ ଆରାଧନା କଲେ। ସମସ୍ତ କୋୟମାନେ ଏକତ୍ର ହୋଇ ବାସୁରୀ ମାକୁ ବର୍ଷା ପାଇଁ ଆରାଧନା କଲେ। ବହୁତ ପୂଜା, ପ୍ରାର୍ଥନା କଲା ପରେ ବାସୁରୀ ମା ସେମାନଙ୍କୁ ଦେଖା ଦେଲେ।

ବାସୁରୀ ମା ଏହି ଅଳସୁଆମାନଙ୍କୁ ପୁଣି ଚେତାଇ ଦେଇ କହିଲେ: ତମେ ମାନେ ଧର୍ମ ଦେବତାଙ୍କୁ ଡାକ। ସେ ଚାହିଁଲେ ବର୍ଷା ହେବ। କିନ୍ତୁ ସାବଧାନ, ଧର୍ମ ଦେବତା ଅଳସୁଆମାନଙ୍କ ଡାକ ଶୁଣନ୍ତି ନାହିଁ। ବାସୁରୀ ମାଙ୍କଠାରୁ ଏକଥା ଶୁଣିବା ପରେ କୋୟମାନଙ୍କର ଚେତା ପଶିଲା। ସେମାନେ ନିଜନିଜର ଭୂଲ ବୁଝି ପାରିଲେ। ସେମାନେ ଏହା ପରଠାରୁ ସମସ୍ତେ କ୍ଷେତବାଡ଼ିକୁ ଯାଇ କାମରେ ଲାଗିଗଲେ। ବର୍ଷା ନ ହେଉ ପଛେ ସମସ୍ତେ କିଛି ନା କିଛି କାମ ଆରମ୍ଭ କରିଦେଲେ। ବହୁତ ହାଡଭଙ୍ଗା ପରିଶ୍ରମ କରିବାରେ ଲାଗିଲେ ଏବଂ ଧର୍ମ ଦେବତାଙ୍କୁ ପ୍ରାର୍ଥନା କଲେ। ସେମାନେ ସେମାନଙ୍କର ଭୂଲ ବୁଝିପାରିବା ଲକ୍ଷ୍ୟ କରି ଧର୍ମ ଦେବତା ଇନ୍ଦ୍ର ଦେବତାଙ୍କୁ କହି ବର୍ଷା କରେଇଲେ। ବର୍ଷା ହେବାରୁ କୋୟମାନେ ଆନନ୍ଦରେ ନାଚି ଉଠିଲେ। ପୁଣି ସେମାନଙ୍କ କ୍ଷେତ ଶସ୍ୟ ଶ୍ୟାମଳା ହୋଇ ଉଠିଲା।

ସେହିଦିନଠାରୁ ଆଉ କାହାକୁ ଅଳସୁଆ ହୋଇ ରହିବାର ଦେଖାଗଲାନି। ସମସ୍ତେ କାମରେ ଲାଗିଲେ। ଆଜି ମଧ୍ୟ କୋୟ ଜାତିର ଆଦିବାସୀମାନେ ବିଶ୍ୱାସ କରନ୍ତି, ମଣିଷ ଯେତେବେଳେ ଅଳସୁଆ ହୋଇଯାଏ, ପୃଥିବୀରେ ସେତେବେଳେ ମରୁଡ଼ି ପଡ଼େ, ଫସଲ ଜଳିଯାଏ ଓ ଲୋକମାନେ ଭୋକ ଉପାସରେ ଛଟପଟ ହୁଅନ୍ତି।





# ବଣ୍ଡା ସ୍ତ୍ରୀ ଲୋକମାନେ ଲଣ୍ଡା କାହିଁକି ?

(ମାଲ୍‌କାନ୍‌ଗିରି, ବଣ୍ଡା ଲୋକ କଥା)

ମାଲ୍‌କାନ୍‌ଗିରି ଜିଲ୍ଲାରେ ବଣ୍ଡା ଆଦିବାସୀ ବାସ କରନ୍ତି। ସେମାନେ ପ୍ରାୟତଃ ଉଲଗ୍ନ ହୋଇ ବୁଲନ୍ତି। ପୁରୁଷମାନେ ଛୋଟ କୌପୁନିଟିଏ ପିନ୍ଧନ୍ତି। ସ୍ତ୍ରୀ ଲୋକମାନେ ମୁଣ୍ଡ ଲଣ୍ଡା କରି ଛୋଟ ଛୋଟ କନା ଖଣ୍ଡିଏ ଗୁଡେଇ ହୋଇଥାନ୍ତି। ଦେହରେ ମାଳି ଓ ପଇସାର ମାଳ ଗୁଡେଇ ଥାନ୍ତି। ବଣ୍ଡା ମହିଳାମାନେ କାହିଁକି ଲଣ୍ଡା ମୁଣ୍ଡ ଓ ଉଲଗ୍ନ ସେ ସମ୍ପର୍କରେ ବହୁ ଲୋକ କଥା ରହିଛି। କେତେକଙ୍କ ମତରେ ରାମ, ଲକ୍ଷ୍ମଣ ଓ ସୀତା ମାଲ୍ୟବନ୍ତରେ ବନବାସ ସମୟରେ ଦିନେ ସୀତା ଉଲଗ୍ନ ହୋଇ ଗୋଟିଏ କୁଣ୍ଡରେ ଗାଧୋଉଥିଲେ।ସୀତାଙ୍କ ଉଲଗ୍ନ ବେଶ ଦେଖି ବଣ୍ଡା ସ୍ତ୍ରୀ ମାନେ ଦେବୀ ସୀତାଙ୍କୁ ପରିହାସ କଲେ। ସୀତାଙ୍କୁ ଏକଥା ବଡ଼ ଅପମାନବୋଧ ହେଲା। ତେଣୁ ସେ କ୍ରୋଧରେ ବଣ୍ଡା ସ୍ତ୍ରୀମାନଙ୍କୁ ଅଭିଶାପ ଦେଲେ: ଆଜିଠୁ

ତମେମାନେ ଉଲଗ୍ନ ହୋଇ ବୁଲିବ। ଯେଉଁଦିନ ମୋର କଥା ଅମାନ୍ୟ କରିବ, ସେଦିନ ତମକୁ ବାଘ ଖାଇଯିବ ଏବଂ ତମର ବଂଶ ଲୋପ ପାଇଯିବ। ଦେବୀ ସୀତାଙ୍କ ଏହି ଅଭିଶାପକୁ ଭୟ କରି ବଣ୍ଡା ସ୍ତ୍ରୀମାନେ ଉଲଗ୍ନ ହୋଇ ବୁଲୁଛନ୍ତି।

ଇଏତ ଗୋଟିଏ ଲୋକ କଥା। ଏହା ବ୍ୟତୀତ ଆଉ ଗୋଟିଏ ଲୋକ କଥା ରହିଛି।

ଗୋଟିଏ ବଣ୍ଡା ବୁଢାର ସାତ ପୁଅ ଥିଲା। ବହୁ କଷ୍ଟରେ ସାତ ପୁଅରେ ଗୋଟିଏ ମାତ୍ର ଝିଅ ହେଲା। ତେଣୁ ଝିଅଟିକୁ ବଣ୍ଡା ବୁଢା ସମେତ ସାତ ଭାଇମାନେ ଭାରି ଗେହ୍ଲା କରୁଥିଲେ। ଭଉଣୀ ଯାହା କହୁଥିଲା, ଭାଇମାନେ ସଙ୍ଗେସଙ୍ଗେ ତାହା ପୂରଣ କରୁଥିଲେ। ବେଶ୍ ଅଲିଅଳରେ ବଣ୍ଡା ଝିଅ ବଢିଥିଲା। କାଳକ୍ରମେ ବଣ୍ଡା ବୁଢା ତାର ସମସ୍ତ ପୁଅମାନଙ୍କୁ ବିଭା କଲା ଏବଂ ସାତ ବୋହୂ ଘରକୁ ଆଣିଲା। ଶେଷରେ ବଣ୍ଡା ବୁଢା ପ୍ରାଣ ତ୍ୟାଗ କଲା।

ମଲା ପୂର୍ବରୁ ବଣ୍ଡା ବୁଢା ସାତ ପୁଅ ଓ ବୋହୂଙ୍କୁ ପାଖକୁ ଡାକି କହିଲା: ମୋର ସମୟ ସରି ଆସୁଛି। ମୁଁ ଆଉ ପାରିକୁ ଚାଲିଯିବି। ତମେ ସବୁ ଭାଇମାନେ ମିଳିମିଶି ଚଳିବ ଏବଂ ଗୋଟିଏ ବୋଲି ଭଉଣୀକୁ କେବେହେଲେ ହତାଦର କରିବ ନାହିଁ। ଏହା କହିବା ପରେ ବୁଢାର ପ୍ରାଣବାୟୁ ଉଡିଗଲା।

ବାପର କଥା ମାନି କିଛି ଦିନ ପୁଅ, ବୋହୂମାନେ ଏକାଠି ମିଳିମିଶି ଚଳିଲେ। ଭାଇମାନେ କାମ କରିବାକୁ କ୍ଷେତକୁ ଯାଆନ୍ତି। ବୋହୂମାନେ ଘରେ ମିଳିମିଶି ଘର କାମ କରନ୍ତି। ଭଉଣୀ ଭାଉଜମାନଙ୍କ ସହ ଘରେ ରହେ ଏବଂ ତାଙ୍କ ସହିତ ଧାନ କୁଟେ, ମାଣ୍ଡିଆ ପେଷେ, ଭାତ ରାନ୍ଧେ। କିଛି ଦିନ ପରେ ଭାଉଜମାନେ ନଣନ୍ଦକୁ ଆଉ ଭଲ ପାଇଲେ ନାହିଁ। ତାକୁ ବହୁତ ଖଟାଇଲେ। ନାନା ପ୍ରକାର ଯନ୍ତ୍ରଣା ଦେଲେ। ଭାଇମାନେ କ୍ଷେତରୁ ଫେରିଲେ ଭାଉଜମାନେ ନଣନ୍ଦ ବିରୋଧରେ ସବୁ ବଖାଣନ୍ତି। ଭାଉଜମାନଙ୍କ କଷ୍ଟ, ଯନ୍ତ୍ରଣା ସହି ନପାରି ଦିନେ ନଣନ୍ଦ ବାଡିରେ ଥିବା ଏକ କୂଅକୁ ଡେଇଁ ପଡିବାକୁ ଯାଉଥିବାବେଳେ ତାର ସାନ ଭାଇ ଦେଖିଦେଲା। ସେ ତତ୍କ୍ଷଣାତ୍ ଯାଇ ଭଉଣୀର କେଶକୁ ଧରି ପକେଇଲା। ଭାଇର ହାତରେ କିନ୍ତୁ କେଶ ଉପୁଡିକି ରହିଗଲା ଏବଂ ଭଉଣୀ କୂଅ ଭିତରକୁ ଖସି ପଡିଲା। ଭଉଣୀ ଲଣ୍ଡା ହୋଇ କୂଅରେ ଖସି ମରିଗଲା। ସେଦିନ ରାତିରେ ଭଉଣୀ ଭାଇମାନଙ୍କୁ ସ୍ୱପ୍ନରେ କହିଲା: ଭାଇମାନେ, ମୁଁ ସିନା ମରିଗଲି। ଯଦି ତମେମାନେ ମୋତେ ଭଲ ପାଉଥାଅ, ତେବେ ମୁଁ ଯେମିତି ଲଣ୍ଡା ହୋଇଗଲି, ଭାଉଜମାନଙ୍କୁ କହିବ ସେମାନେ ସବୁଦିନ ପାଇଁ ଲଣ୍ଡା ହୋଇ ଚଳିବେ। ତେବେ ଯାଇ ମୋର ଆତ୍ମା ଶାନ୍ତି ପାଇବ। ଭଉଣୀର କଥା ମାନି ସବୁ ଭାଇମାନେ ସେମାନଙ୍କ ସ୍ତ୍ରୀଙ୍କ ମୁଣ୍ଡକୁ ଲଣ୍ଡା କରିଦେଲେ। ସେହିଦିନଠାରୁ ବଣ୍ଡା ସ୍ତ୍ରୀ ଲୋକମାନେ ଲଣ୍ଡା ହୋଇଛନ୍ତି ବୋଲି ବିଶ୍ୱାସ କରାଯାଏ।





# ବାଘ ପୁଅ, ରଜା ଝିଅ ବାହାଘର

(ନବରଙ୍ଗପୁର, ଭତରା ଲୋକ କଥା)

ଗୋଟିଏ ଗାଁରେ ସ୍ୱାମୀ, ସ୍ତ୍ରୀ ଦୁଇ ଜଣ ରହୁଥିଲେ। ସ୍ତ୍ରୀ ଗର୍ଭବତୀ ହୋଇଥିଲା। ଦୁହେଁ ସବୁବେଳେ ଜଙ୍ଗଲକୁ କାଠ କାଟିବାକୁ ଯାଆନ୍ତି। ଦିନେ ସ୍ୱାମୀ, ସ୍ତ୍ରୀ ଜଙ୍ଗଲକୁ କାଠ କାଟିବାକୁ ଯାଇଛନ୍ତି, ଏହି ସମୟରେ ସ୍ତ୍ରୀର ଗର୍ଭବେଦନା ହେଲା। ସ୍ତ୍ରୀଟି ସେଇ ଜଙ୍ଗଲରେ ପୁଅଟିଏ ଜନ୍ମ କଲା।

ସ୍ୱାମୀ, ସ୍ତ୍ରୀ ଦୁହେଁ ପୁଅକୁ ପତ୍ର ପାରି ଶେଯରେ ଶୁଆଇ ଦେଇ ବଣରୁ ନିଆଁ ଆଣିବାକୁ ଗଲେ। ପୁଅଟି ତାର ପତ୍ର ଉପରେ ଶୋଇଥାଏ। ଏହି ସମୟରେ ବାଘ, ବାଘୁଣୀ ଦୁହେଁ ଏଇ

ବାଟ ଦେଇ ଯାଉଥିଲେ। ବାଘୁଣୀ ଆଖିରେ ଏହି ସୁନ୍ଦର ପୁଅଟି ପଡିଗଲା। ଏତେ ସୁନ୍ଦର ପୁଅଟିକୁ ଦେଖି ବାଘୁଣୀର ତାକୁ ଆଉ ମାରିବାକୁ ଇଚ୍ଛା ହେଲା ନାହିଁ। ସେ ସଙ୍ଗେସଙ୍ଗେ ପୁଅଟିକୁ ଲୁଚାଇ ଦେଉଥିଲା, ହଠାତ୍ ବାଘର ନଜର ପଡିଗଲା। ବାଘ ବାଘୁଣୀକୁ କହିଲା: କ'ଣ ତମେ ଲୁଚାଉଛ

ବାଘୁଣୀ କହିଲା: ନା କିଛି ନୁହେଁ।

ବାଘ କହିଲା: ହଁ ତ କ'ଣ ଗୋଟା ଲୁଚାଇ ଦେଲ।

ବାଘୁଣୀ ସେଉଟୁ ସତ ମାନିଗଲା ଏବଂ ବାଘକୁ ନିବେଦନ କରି କହିଲା: ଏଇ ଟିକି ମଣିଷ ପିଲାଟିକୁ ମାରିବା ନାହିଁ। ଏହି ପିଲାଟି ଅତି ସୁନ୍ଦରିଆ ହୋଇଛି। ତାକୁ ଆମେ ପାଳିବା। ବାଘ ସେଉଟୁ ବାଘୁଣୀ କଥାରେ ରାଜି ହୋଇ ପିଲାଟିକୁ ପାଳିବାକୁ ଇଚ୍ଛା କଲେ। ସେହି ଦିନଠୁ ବାଘ, ବାଘୁଣୀ ଦୁହେଁ ଏହି ପିଲାଟିକୁ ପାଳିବାକୁ ଲାଗିଲେ।

ପ୍ରତିଦିନ ବାଘ, ବାଘୁଣୀ ଦୁହେଁ ରାସ୍ତା କଡରେ ଛକି ବସନ୍ତି। ସେହି ରାସ୍ତା ଦେଇ ଯେଉଁ ମଣିଷ ଖାଦ୍ୟ, ପଦାର୍ଥ ଧରି ଯାଉଥାନ୍ତି, ସେମାନଙ୍କୁ ଧରି ସେମାନଙ୍କଠାରୁ ଖାଦ୍ୟ ଆଣି ପିଲାଟିକୁ ଦିଅନ୍ତି। ସେମିତି ସେହି ବାଟ ଦେଇ ଯାଉଥିବା ଲୋକଙ୍କଠାରୁ ପୋଷାକପତ୍ର ଛଡାଇ ଆଣି ପୁଅକୁ ପିନ୍ଧାଇ ଦିଅନ୍ତି। ଦିନେ ବାଘ, ବାଘୁଣୀ ନିକଟ ଗାଁରେ ବସୁଥିବା ଗୁରୁବାରିଆ ହାଟରେ ପଶିଗଲେ। ଯେମିତି ବାଘ, ବାଘୁଣୀ ହାଟକୁ ପଶି ଯାଇଛନ୍ତି, ହାଟରେ ଯେ ଯୁଆଡେ ଡିଆଁ ମାରି କୁଆଡେ ଧାଇଁ ଧାଇଁ ପଳେଇ ଗଲେ। ଏହି ସୁଯୋଗରେ ବାଘ, ବାଘୁଣୀ ହାଟରୁ ପୁଅ ପାଇଁ ପୋଷାକ, ଖାଇବା ଜିନିଷ, ରେଡିଓ, ସାଇକେଲସବୁ ନେଇ ଘରକୁ ଗଲେ। ପୁଅ ପାଇଁ ବାଘ, ବାଘୁଣି ମଣିଷ ବ୍ୟବହାର କରୁଥିବା ସବୁ ଜିନିଷପତ୍ର ଏମିତି ଭାବେ ଆଣି ଯୋଗାଇ ଦେଲେ।

ପୁଅଟି ଧୀରେ ବଢିବାକୁ ଲାଗିଲା। ପିଲାରୁ ଯୁବକ ହେଲା। ପୁଅ ବି ବାଘ,ବାଘୁଣୀକୁ ବାପା, ମା ଭାବେ ବହୁତ ଭକ୍ତି କରୁଥିଲା। ଦିନେ ବାଘ, ବାଘୁଣୀ ପୁଅ ବିଭା କରିବାକୁ ଇଚ୍ଛା କଲେ। ତେବେ ନିଜର ଅତି ଗେହ୍ଲା ପୁଅଟିଏ ପାଇଁ କେଉଁଠୁ ସୁନ୍ଦରୀ ଝିଅଟିଏ ଆଣିବେ, ସେମାନେ ଚିନ୍ତା କଲେ। ବହୁତ ଚିନ୍ତା କରିବା ପରେ ସେମାନେ ଭାବିଲେ ରାଜା ଝିଅକୁ ଉଠାଇ ଆଣିବେ।

ରାଜା ଝିଅ ଯେଉଁ ପୋଖରୀରେ ଗାଧୋଉଥିଲା ବାଘ ବାଘୁଣୀ ପୂର୍ବରୁ ଯାଇ ସେଠାରେ ଛକି ବସିଥିଲେ। ଯେମିତି ରାଜା ଝିଅ ଗାଧୋଇବାକୁ ଆସିଛି, ବାଘ ରାଜା ଝିଅକୁ ସିଧା ଟେକି ନେଇ ଆସିଲା। ରଜା ଝିଅ ବାଘକୁ କାହିଁକି ଉଠାଇ ନେଇ ଯାଉଛି ବୋଲି ପ୍ରଶ୍ନ କରିବାରୁ ବାଘ ସବୁ ବର୍ଣ୍ଣନା କଲା। ତା ପରେ ରଜା ଝିଅ ବାଘକୁ କହିଲା: ଦେଖ, ମୁଁ ତମକୁ ସତ୍ୟ କରି କହୁଛି, ତମ ପୁଅ ସାଙ୍ଗରେ ମୋର ବିଭା ହେବ। କିନ୍ତୁ ମୋତେ ଉଠାଇ ନ ନେଇ ଯେଉଁଠୁ ଆଣିଥିଲ ସେଠି ଛାଡି ଦେଇ ଆସ। ତମ ପୁଅକୁ ରାଜ ନବରକୁ ପଠାଅ।



# ଲାୟର୍ନି ଓ ହୁମାଗୁଞ୍ଜି ଚଢ଼େଇ

(ନବରଙ୍ଗପୁର, ଅମାନାତ୍ୟ ଲୋକକଥା)

ଗୋଟିଏ ଗାଁରେ ସ୍ୱାମୀ ସ୍ତ୍ରୀ ଦୁଇ ଜଣ ରହୁଥିଲେ। ସେମାନେ ହସ ଖୁସିରେ ବେଶ୍ ଆନନ୍ଦରେ ଦିନ କାଟୁଥିଲେ। ଜଙ୍ଗଲରୁ କାଠ କାଟି ଚଳୁଥିଲେ।

ସ୍ତ୍ରୀଟି ଗର୍ଭବତୀ ଥିଲା। ସବୁବେଳେ ସ୍ୱାମୀ ସ୍ତ୍ରୀ ଦୁହେଁ ସାଙ୍ଗ ହୋଇ ବଣକୁ କାଠ କାଟିବାକୁ ଯାଆନ୍ତି। ସନ୍ଧ୍ୟାରେ ଘରକୁ ସାଙ୍ଗ ହୋଇ ଫେରନ୍ତି।

ସେଦିନ ଦୁହେଁ କାଠ କାଟି ଯାଇଥାନ୍ତି। ସ୍ୱାମୀ ଗଛ ଉପରକୁ ଚଢି କାଠ କାଟୁଥାଏ। ସ୍ତ୍ରୀର ଏହି ସମୟରେ ଗର୍ଭ କଷ୍ଟ ହେଲା ଏବଂ ସେଇଠି ତାର ଗୋଟିଏ ପୁଅ ଜନ୍ମ ହେଲା।

ଏହି ସମୟରେ କୋଉଠି ଥିଲା କେଜାଣି ଏକ ମହାବଳ ବାଘ ଆସି ସ୍ତ୍ରୀଟିକୁ ଉଠାଇ ନେଇଗଲା।

ବାଘ ମାକୁ ଉଠାଇ ନେଇଯିବାରୁ ପିଲାଟି କଇଁ କଇଁ କାନ୍ଦି କାନ୍ଦିକା ଗଛ ମୂଳରୁ ତଳକୁ ଗଡିଗଲା। ପିଲାଟି ଗଡିଗଡି ଯାଇ ଏକ ଗୁମ୍ଫାରେ ପଶିଗଲା। ଏଣେ ମାଆକୁ ବାଘ

ନେଇଯାଇଥିବାରୁ ମାଆ ବାଘକୁ ନେହୁରା ହେଲା। ଅନୁନୟ ହୋଇ ସ୍ତ୍ରୀ ଲୋକଟି ବାଘକୁ କହିଲା: ବାଘ ମାମୁଁ, ମୋତେ ଛାଡି ଦେଇ ଆସ। ତେଣେ ମୋ ପୁଅ ଭୋକରେ ଡହଳ ବିକଳ ହୋଇ କାନ୍ଦୁଥିବ। ମୋତେ ଦୟାକର। ମୋତେ ନେଇ ମୋ ପୁଅ ପାଖରେ ଛାଡି ଦେଇ ଆସ।

ଏଣେ ନିଜର ସ୍ତ୍ରୀ ଓ ପୁଅକୁ ନ ପାଇ ବାପା ଗଛରୁ ଓହ୍ଲାଇ ପାଗଳ ହୋଇ ସମଗ୍ର ଜଙ୍ଗଲରେ ବୁଲିବାକୁ ଲାଗିଲା। ନିଜ ସ୍ତ୍ରୀ ଓ ପିଲାକୁ ଖୋଜି ଖୋଜି ସମଗ୍ର ବଣରେ ଧାଇଁବାକୁ ଲାଗିଲା।

ବାଘ ସ୍ତ୍ରୀ ଲୋକଟିର ବିକଳ ସହି ନପାରି ତା ପ୍ରତି ଦୟା କଲା। ତାକୁ ନଖାଇ ଛାଡି ଦେଲା। ସ୍ତ୍ରୀ ଲୋକଟି ତାର ପୁଅ ଓ ସ୍ୱାମୀକୁ ଖୋଜି ଖୋଜି ପୂର୍ବ ସ୍ଥାନରେ ଅର୍ଥାତ୍ କାଠ କାଟୁଥିବା ଜାଗାରେ ପହଞ୍ଚିଲା। ତେବେ ସେତେବେଳକୁ ସେଠାରେ ତାର ପୁଅ ଓ ସ୍ୱାମୀ ନଥିଲେ। ସେ ତାର ପୁଅ ଓ ସ୍ୱାମୀକୁ ନ ପାଇ ପାଗିଳୀ ହୋଇଗଲା। ଖାଲି କାନ୍ଦି କାନ୍ଦି ଏଣେତେଣେ ଧାଇଁଲା।

କଥିତ ଅଛି ଏହି ମାଆଟି କାନ୍ଦି କାନ୍ଦି ପକ୍ଷୀଟିଏ ପାଲଟିଗଲା। ଏବେ ବି ଜଙ୍ଗଲରେ ସେହି ପକ୍ଷୀ ଅଛି ଏବଂ ସବୁବେଳେ କାନ୍ଦୁଛି। ଏହି ପକ୍ଷୀଟିର ନାମ ଲାୟର୍ନି। ଲାୟର୍ନି ପକ୍ଷୀ ସୁ.. ସୁ.. କରି ସବୁବେଳେ କାନ୍ଦୁଥାଏ। କାନ୍ଦି କାନ୍ଦି ତାର ପୁଅ, ସ୍ୱାମୀକୁ ଜଙ୍ଗଲ ସାରା ଖୋଜୁଥାଏ। ଏହି ପକ୍ଷୀ ଏମିତି ସୁ.. ସୁ.. କରି କାନ୍ଦୁଥାଏ ଯେ, କେହି ନବାଗତ ପଥିକ ଜଙ୍ଗଲ ଦେଇ ଯାଉଥିବାବେଳେ ଡରି ଯାଆନ୍ତି।

ନବରଙ୍ଗପୁରର କୋଷାଗୁମୁଡା, ଡାବୁଗାଁ, ଉମରକୋଟ, ତେନ୍ତୁଳିଖୁଣ୍ଟି ଜଙ୍ଗଲରେ ଏହି ପକ୍ଷୀ ଏବେ ବି ସୁ.. ସୁ.. କରି କାନ୍ଦୁଥିବାର ଲୋକେ ଶୁଣନ୍ତି। ଭାରି କରୁଣ ଏହି କ୍ରନ୍ଦନର ସ୍ୱର।

ଏହାଛଡା ସ୍ତ୍ରୀ ପୁଅକୁ ନପାଇ ସ୍ୱାମୀ ମଧ୍ୟ ପାଗଳ ହୋଇଗଲା। ସେ ବାଘ ଉପରେ ପ୍ରତିଶୋଧପରାୟଣ ହୋଇ ଉଠି କ୍ରମେ ଏକ ପକ୍ଷୀ ପାଲଟି ଗଲା। ତାର ନାମ ହେଲା ହୁମାଗୁଞ୍ଜି ପକ୍ଷୀ। ହୁମାଗୁଞ୍ଜିମାନେ ଏବେ ମଧ୍ୟ ନବରଙ୍ଗପୁର ଜିଲ୍ଲାର ବିଭିନ୍ନ ଜଙ୍ଗଲରେ ଦେଖିବାକୁ ମିଳନ୍ତି। କେବଳ ହୁଁ.. ହୁଁ.. କରି ବୋବାଉଥାଏ। ଭାରି ଭୟଙ୍କର ଓ କରୁଣ। ଅଜଣା ଲୋକ ଏହି ଶବ୍ଦରେ ନିଶ୍ଚିତ ଡରିଯିବେ, ଏଥିରେ ସନ୍ଦେହ ନାହିଁ। ହୁମାଗୁଞ୍ଜି ଜଙ୍ଗଲରେ ବିଳମ୍ବିତ ରାତିରେ ଏମିତି ଶବ୍ଦ କରି ବୋବାଉଥିବାବେଳେ ସ୍ଥାନୀୟ ଲୋକେ ଭୟ ପାଆନ୍ତି ବୋଲି ଲୋକଙ୍କଠାରୁ ଶୁଣିବାକୁ ମିଳେ।

ସେହିପରି ଶିଶୁ ପୁତ୍ରଟି ଗଡିଗଡି ଯାଇ ଯେଉଁ ଗୁମ୍ଫାରେ ପଶିଗଲା, ସେ 'ସାଲ୍' ନାମରେ ଏକ ପକ୍ଷୀ ପାଲଟିଗଲା। ଦେଖିବାକୁ କଉତୁକିଆ ଏବଂ ଚୁପ୍‌ଚାପ୍। ଏହି କାହାଣୀଟି ନବରଙ୍ଗପୁର ଜିଲ୍ଲାର ଲୋକ କାହାଣୀ ମଧ୍ୟରେ ଅତି ମର୍ମସ୍ପର୍ଶୀ ଓ କରୁଣ।





# ଶଶିସେନା କାହାଣୀ

(କୋରାପୁଟ ଓ ନବରଙ୍ଗପୁର, ପରଜା ଲୋକକଥା)

ବନ ମୂଳକର କାହାଣୀ। ବଣ ଭିତରେ ଗୋଟିଏ ରାଜ ଉଆସ ଥିଲା। ସେଠି ରାଜା, ରାଣୀ, ପାଟମନ୍ତ୍ରୀ, କଟୁଆଳ ସମସ୍ତେ ରହୁଥିଲେ। ରାଜ୍ୟ ଶାସନ ଭଲରେ ଚାଲିଥିଲା।

ରାଜାଙ୍କର ଗୋଟିଏ ଅତି ସୁନ୍ଦରୀ କନ୍ୟା ଥିଲା। ତାର ନାଁ ଶଶିସେନା। ଶଶିସେନା ଥିଲା ଦିବ୍ୟ ସୁନ୍ଦରୀ। ଗୋଟିଏ ଅରୁଆ ଚାଉଳରେ ଗଢା ଭଳି। ଶଶିସେନା ଦିନକୁ ଦିନ ଚନ୍ଦ୍ରକଳା ପରି ବଢିଲା। ଯୁବତୀ ହେଲା। ଶଶିସେନାର ବାହାଘର ପ୍ରସ୍ତାବ ପଡିଲା। ହେଲେ

ରାଜାଙ୍କର ଏକ ନୂଆ ସମସ୍ୟା ଉଭା ହେଲା । ଶଶିସେନା ପାଇଁ କେଉଁଠି ହେଲେ ଉପଯୁକ୍ତ ବର ମିଳିଲେ ନାହିଁ।

ଶଶିସେନା ଏତେ ସୁନ୍ଦରୀ ଥିଲା ଯେ, ତାକୁ ଉପଯୁକ୍ତ ପ୍ରାର୍ଥୀ ମିଳୁ ନଥିଲେ। ରାଜା ଯେଉଁଠି ବି ବର ଖୋଜୁଥିଲେ ଶଶିସେନାର ମନକୁ ଯାଉନଥିଲା । ତେଣୁ ଶଶିସେନା ଅତ୍ୟନ୍ତ ଦୁଃଖୀ ହୋଇପଡିଲା ।

ଏଣେ ଝିଅର ବୟସ ଗଡି ଯାଉଥାଏ। ରାଜା, ରାଣୀ ବ୍ୟସ୍ତ ହୋଇ ପଡୁଥାନ୍ତି।

ଦିନେ ଶଶିସେନା ଦୁଃଖରେ ବସିଛି, ତାର ସଖୀ ଆସି ତାକୁ ଏଥିନେଇ ଠାକୁରାଣୀଙ୍କୁ ପୂଜିବାକୁ କହିଲା । ଅର୍ଦ୍ଧରାତ୍ରରେ ଯାଇ ଠାକୁରାଣୀଙ୍କୁ ପୂଜା କଲେ ଠାକୁରାଣୀ ଫଳ ଦେବେ ଓ ଦୁଃଖ ବୁଝିବେ ବୋଲି ସଖୀ କହିଲା ।

ଏହି ଅନୁସାରେ ଶଶିସେନା ପ୍ରତିଦିନ ଅର୍ଦ୍ଧରାତ୍ରରେ ଠାକୁରାଣୀଙ୍କୁ ପୂଜା କରିବାରେ ଲାଗିଲା। ସବୁଦିନ ଏମିତି କଠୋର ତପସ୍ୟା କଲା। ହେଲେ ଠାକୁରାଣୀ ଶଶିସେନାର ଦୁଃଖ ଶୁଣିଲେ ନାହିଁ। ଅତି ଦୁଃଖ ସହି ନପାରି ଶଶିସେନା ଆତ୍ମହତ୍ୟା କରିବାକୁ ଯାଉଥିଲା। ଏହି ସମୟରେ ଠାକୁରାଣୀ ତାଙ୍କର ମହିମା ଦେଖାଇଲେ। ସଙ୍ଗେସଙ୍ଗେ ସେଠାରେ ଏକ ଭୟଙ୍କର ସାପ ଉଭା ହୋଇଗଲା ।

ଶଶିସେନା ସାପକୁ ଦେଖି ଡ଼ରିଗଲା । ତେବେ ସାପଟି କହିଲା: ଡର ନାହିଁ, ରାଜକୁମାରୀ। ମୋ ଉପରେ ଠାକୁରାଣୀଙ୍କ ପାଣି ସିଞ୍ଚି ଦିଅ। ଶଶିସେନା ସାପଟି କହିବା ଅନୁସାରେ ତା ଉପରେ ଠାକୁରାଣୀଙ୍କ ପାଣି ସିଞ୍ଚି ଦେଲା। ସଙ୍ଗେସଙ୍ଗେ ସାପଟି ଏକ ସୁନ୍ଦର ଯୁବକ ପାଲଟିଗଲା ।

ଏହାପରେ ଠାକୁରାଣୀ ନିଜେ ଉଭା ହୋଇ ଶଶିସେନାକୁ ଏହି ସୌମ୍ୟକାନ୍ତ ଯୁବକକୁ ବିଭା ହେବାକୁ କହିଲେ। ତେବେ ଠାକୁରାଣୀଙ୍କ ନିର୍ଦ୍ଦେଶ ଅନୁସାରେ ଶଶିସେନା ଉକ୍ତ ଯୁବକକୁ ବିଭା ହେବା ପାଇଁ ପ୍ରସ୍ତାବ ଦେଲା। ଯୁବକଟି ରାଜି ହେଲା। ଶଶିସେନା ତାଙ୍କ ଘରକୁ ଫେରିଯିବାକୁ କହିଲା । କିନ୍ତୁ ଯୁବକ ଏହାକୁ ମନା କରିଦେଲା ଏବଂ ରାଜ ନଅରକୁ ନ ଯାଇ ସେମାନେ ଅନ୍ୟତ୍ର ଚାଲିଯିବାକୁ ପ୍ରସ୍ତାବ ଦେଲା।

ଜଣେ ଅପରିଚିତ ଯୁବକକୁ ଦେଖିଲେ ହୁଏତ ରାଜା ତାଙ୍କର ମୁଣ୍ଡ କାଟ ଆଦେଶ ଦେଇ ପାରନ୍ତି ଏହି ଭୟରେ ଯୁବକ ଶଶିସେନାକୁ ରାଜ ନଅରକୁ ଯିବାକୁ ମନା କଲା। ତେଣୁ ଦୁହେଁ ରାଜ ନଅରକୁ ନଯାଇ ଅନ୍ୟ ରାଜ୍ୟ ଅଭିମୁଖେ ଯାତ୍ରା କଲେ। ଉକ୍ତ ଯୁବକଟି ଏକ ଘୋଡାରେ ବସେଇ ଶଶିସେନାକୁ ଅନ୍ୟ ରାଜ୍ୟ ଅଭିମୁଖେ ନେଲା। ବାଟରେ ଯାଉଯାଉ କ୍ଳାନ୍ତ ହୋଇ ପଡିଲେ। ଏକ ସ୍ଥାନରେ ବିଶ୍ରାମ ନେଲେ। ଏହା ପରେ ଯୁବକ ଶଶିସେନାକୁ ବସେଇ ଖାଦ୍ୟ ଆଣିବା ପାଇଁ ନିକଟ ଗାଁକୁ ଗଲା ।

ଯୁବକଟି ଗାଁରେ ଏକ ମାଲ୍ୟାଣି ଘରେ ପହଞ୍ଚିଗଲା । ମାଲ୍ୟାଣୀ ବୁଢିକୁ କିଛି ଖାଦ୍ୟ ମାଗିଲା । ମାଲ୍ୟାଣି ବୁଢି ଏତେ ସୁନ୍ଦର ଯୁବକକୁ ଦେଖି ତାର ଲୋଭ ହେଲା । ଏହି ଯୁବକକୁ ନିଜ ଘରେ ରଖିବାକୁ ମାଲ୍ୟାଣି ବୁଢିର ଇଛା ହେଲା । ତେଣୁ ସେ ଯୁବକ ସମ୍ପର୍କରେ ଜାଣିବାକୁ ଚେଷ୍ଟା କଲା । ଯୁବକଟି ସବୁ କଥା ବର୍ଣ୍ଣନା କଲା ଏବଂ ତାର ପତ୍ନୀ ଶଶିସେନାକୁ ବାଟରେ ବସେଇ ଦେଇ ଆସିଛି ବୋଲି କହିଲା ।

ଏହା ଶୁଣି ବୁଢିଟି ଯୁବକ ପ୍ରତି ଦୟା ଦେଖେଇ କହିଲା, ଚାଲ ତମ ପତ୍ନୀକୁ ଆମ ଘରକୁ ଆଣିବା । ତମେ ଦୁହେଁ ଆମ ଘରେ ରହିବ ଏବଂ ମୁଁ ତମକୁ ପାଇଟି କରି ପୋଷିବି । ଏମିତି ମାଲ୍ୟାଣୀ ବୁଢି କଥାରେ ଭଳିଯାଇ ଯୁବକଟି ତାର ସ୍ତ୍ରୀକୁ ସାଥିରେ ଧରି ମାଲ୍ୟାଣି ଘରକୁ ଆସିଲା ।

ଦୁହେଁ ବୁଢି ଘରେ ଖାଇଲେ, ପିଇଲେ । ଏବଂ ରାତି ହେବାରୁ ଦୁହେଁ ବୁଢି ଘରେ ଶୋଇଲେ । ସେଉଟୁ କ'ଣ ହୋଇଛି ନା, ବୁଢି ଦୁହେଁ ଶୋଇଥିବା ଘରକୁ ଆସିଲା । ଦୁହେଁ ନିଘୋଡ ନିଦରେ ଶୋଇ ପଡିଥିଲେ ।

ମାଲ୍ୟାଣି ବୁଢି ଯୁବକଟି ଉପରେ କିଛି ମନ୍ତୁରା ପାଣି ସିଞ୍ଚି ଦେଇ ତାକୁ ମେଣ୍ଢାଟିଏ କରିଦେଲା ଏବଂ ସେଠାରୁ ଚାଲି ଆସିଲା । ସକାଳୁ ଶଶିସେନା ଉଠି ଦେଖେତ ତା ସ୍ୱାମୀ ନାହିଁ । ସେ ଆସି ବୁଢିକୁ କହିଲା । ବୁଢି କହିଲା: କାଇଁ ଲୋ ମା, ତମେ ତ ଶୋଇବାକୁ ଗଲ, ମୁଁ ବୁଢିଲୋକ, ମୁଁ ଆର ଘରେ ଶୋଇଲି । କେଜାଣି, କେତେବେଳେ ତୋ ସ୍ୱାମୀ କୁଆଡକୁ ଚାଲିଗଲା, ମୁଁ ଜାଣିଲି ଲୋ ମା । ବୁଢି ଶଶିସେନା ପ୍ରତି ଦୁଃଖ ପ୍ରକାଶ କରି ତାକୁ ସମବେଦନା ଜଣାଇଲା । ଶଶିସେନା ବୁଢିର କପଟ ବୁଝି ପାରିଲା ନାହିଁ । ଏବଂ ସ୍ୱାମୀଙ୍କୁ ଖୋଜି ଖୋଜି ସେଠାରୁ ଚାଲି ଆସିଲା ।

ଏଣେ ବୁଢି ଯୁବକଟିକୁ ମନ୍ତ୍ର ବଳରେ ଦିନରେ ମେଣ୍ଢା କରି ରଖେ ଓ ରାତିରେ ମଣିଷ କରେ । ଶଶିସେନା ସ୍ୱାମୀକୁ ନ ପାଇ କାନ୍ଦି କାନ୍ଦି ଏଣେତେଣେ ଖୋଜିଲା । ଏବଂ କେଉଁଠୁ ନ ପାଇ ପୁଣି ସେଇ ଠାକୁରାଣୀଙ୍କ ନିକଟକୁ ଗଲା ।

ଠାକୁରାଣୀ ଶଶିସେନାର ଦୁଃଖ ବୁଝିଲେ ଏବଂ ତାକୁ ସ୍ୱପ୍ନାଦେଶ କଲେ ଯେ, ତାର ସ୍ୱାମୀ ସେଇ ମାଲ୍ୟାଣି ବୁଢି ଘରେ ମେଣ୍ଢା ହୋଇ ରହିଛି । ଏହା ପରେ ଠାକୁରାଣୀ ଶଶିସେନାକୁ ଏକ ବର ଦେଲେ । ଶଶିସେନା ଚାହିଁଲେ ତା ନିଜ ଇଛା ଅନୁସାରେ ଯେଉଁ ବେଶ ଧରିପାରିବ ବୋଲି ଠାକୁରାଣୀ ତାକୁ ବର ଦେଲେ ଏବଂ ଏହା ପରେ ଶଶିସେନା ତାର ସ୍ୱାମୀଙ୍କୁ ବୁଢି କବଳରୁ ଉଦ୍ଧାର କରିବାକୁ ଲାଗିପଡିଲା ।

ଏହା ପରେ ଶଶିସେନା ଜଣେ ସୁନ୍ଦର ଯୁବକ ବେଶ ଧାରଣ କଲା ଏବଂ ମାଲ୍ୟାଣି ବୁଢି ଯେଉଁ ରାଜ୍ୟରେ ରହୁଥିଲା, ସେହି ରାଜ୍ୟର ରାଜାଙ୍କ ଦରବାର ଅଭିମୁଖେ ଯାତ୍ରା କଲା ।

ବାଟରେ ଯାଉ ଯାଉ ରାଜ ନଅର ନିକଟରେ ପହଞ୍ଚିଲା ବେଳକୁ ବହୁ ଲୋକ ଏଣେତେଣେ ଧାଉଁଥିବାର ଦେଖିଲା। ରାଜ କୁମାରୀଙ୍କୁ ବାଘ ନେଇଯାଉଥିବାରୁ ଲୋକେ ଠେଙ୍ଗାବାଡି, ଅସ୍ତ୍ରଶସ୍ତ୍ର ଧରି ଧାଉଁଛନ୍ତି କିନ୍ତୁ ବାଘକୁ ଧରି ପାରୁନାହାନ୍ତି କି ମାରି ପାରୁନାହାନ୍ତି।

ଶଶିସେନା ଏହା ଦେଖି ଦେବୀ ଦେଇଥିବା ବର ବଳରେ ବାଘକୁ ଧରି ମାରିଦେଲା ଏବଂ ରାଜକୁମାରୀଙ୍କୁ ଉଦ୍ଧାର କଲା। ଏହା ଦେଖି ରାଜା ପ୍ରସନ୍ନ ହେଲେ ଓ ଶଶିସେନାକୁ ଉପଯୁକ୍ତ ସମ୍ମାନ ଦେଇ ରାଜନଅରକୁ ନେଲେ। ରାଜାଙ୍କର ଗୋଟିଏ ପୁଅ ଥିଲା ଶଶିସେନା ବୟସର। ଶଶିସେନା ରାଜକୁମାର ସାଙ୍ଗରେ ମିତ୍ର ବସିଲା। ଶଶିସେନା ଯୁବକ ରୂପ ଧାରଣ କରିଥିବାରୁ ସେ ନାରୀ ବୋଲି କେହିବି ଜାଣି ପାରିନଥିଲେ।

କିଛି ଦିନ ପରେ ରାଜମାତାଙ୍କୁ ପ୍ରେତ ସବାର ହେଲା। ରାଜମାତା ଖାଲି ଏଣୁତେଣୁ ଗପିଲେ। ଏହା ଦେଖି ରାଜାଙ୍କର ଚିନ୍ତା ବଢିଗଲା। କେଉଁଠୁ ତାନ୍ତ୍ରିକ ଆସିବ ଏବଂ ରାଜମାତାଙ୍କ ଦେହରୁ ପ୍ରେତ ବାହାର କରିବ ରାଜାଙ୍କର ଚିନ୍ତା ବଢିଯାଉଥାଏ। ଏହି ସମୟରେ ଯୁବକ ବେଶଧାରୀ ଶଶିସେନା ମାଲ୍ୟାଣୀ ରାଜମାତାଙ୍କୁ ଭଲ କରିପାରିବ ବୋଲି ରାଜାଙ୍କୁ କହିଲା।

ରାଜା ଶଶିସେନା କଥା ଅନୁସାରେ ମାଲ୍ୟାଣିକୁ ଆଣିବା ପାଇଁ ଦୂତ ପଠେଇଲେ। ଦୂତ ଯାଇ ମାଲ୍ୟାଣି ଘରେ ପହଞ୍ଚିଯାଇ ରାଜମାତାଙ୍କ ସମ୍ପର୍କରେ କହିଲେ ଏବଂ ତାଙ୍କୁ ତୁରନ୍ତ ରାଜନଅରକୁ ଯିବାକୁ କହିଲେ। ମାଲ୍ୟାଣି ରାଜନଅରକୁ ଆସିବାକୁ ରାଜି ହେଉ ନଥିଲା। କିନ୍ତୁ ଦୂତମାନେ ତାକୁ ଜବରଦସ୍ତ ଉଠାଇ ନେଇଗଲେ। ମାଲ୍ୟାଣି ରାଜ ନଅରରେ ପହଞ୍ଚି ରାଜମାତାଙ୍କୁ ଝଡାଫୁଙ୍କା କଲା। ଏହି ସମୟରେ ରାଜମାତା ମେଣ୍ଢା ଖାଇବାକୁ କହିଲା। ମେଣ୍ଢା ଖାଇଲେ ଭୂତ ଛାଡିଯିବ ବୋଲି ରାଜମାତାଙ୍କ ଦେହରେ ସବାର ହୋଇଥିବା ପ୍ରେତ କହିଲା। ଏହା ଶୁଣି ମାଲ୍ୟାଣିର ହଲକ ଶୁଖିଗଲା।

ଏହା ପରେ ପୁରୁଷ ବେଶଧାରୀ ଶଶିସେନା ରାଜାଙ୍କୁ କହିଲା: ମଣିମା, ଏହି ମାଲ୍ୟାଣି ଘରେ ଏକ ମେଣ୍ଢା ଅଛି, ତାକୁ ଅଣାଯାଉ।

ରାଜା ତୁରନ୍ତ ଆଦେଶ ଦେଲେ ମାଲ୍ୟାଣି ଘରୁ ମେଣ୍ଢା ନେଇ ଆସ। ମାଲ୍ୟାଣି ବାରମ୍ବାର ମନା କଲା ତା ଘରେ ମେଣ୍ଢା ନାହିଁ।

ଶଶିସେନା କହିଲା: ମଣିମା ଏହି ମାଲ୍ୟାଣି ଘରେ ଏକ ମେଣ୍ଢା ଅଛି। ମାଲ୍ୟାଣିକୁ ଏଠାରେ ବନ୍ଦୀ କରିଦେଇ ଦୂତକୁ ପଠାଇ ତା ଘରୁ ମେଣ୍ଢା ଆଣ। ରାଜା ସେୟା କଲେ ଓ ମାଲ୍ୟାଣି ଘରୁ ମେଣ୍ଢା ଆଣିଲେ।

ପୁରୁଷ ବେଶଧାରୀ ଶଶିସେନା ପୁଣି ରାଜାଙ୍କୁ କହିଲେ: ମଣିମା, ମାଲ୍ୟାଣିକୁ ତୁରନ୍ତ ନିର୍ଦ୍ଦେଶ ଦିଅ ଏହି ମେଣ୍ଢାକୁ ମଣିଷ କରିଦେଉ। କାରଣ ଏହି ମେଣ୍ଢାଟି ଜଣେ ମଣିଷ ବୋଲି ମୋତେ ସ୍ୱପ୍ନାଦେଶ ହୋଇଛି। ଏହି ମେଣ୍ଢାଟି ମଣିଷ ହୋଇଗଲେ ରାଜମାତାଙ୍କ ଦେହରୁ ପ୍ରେତ ଆପେଆପେ ଚାଲିଯିବ।



# ଦୁଇ ସଙ୍ଗାତ ଗପ

(ନବରଙ୍ଗପୁର ଜିଲ୍ଲାର ଭତରା ଲୋକ କାହାଣୀ)

ଗୋଟେ ଧନୀ ଘରର ଝିଅ ଓ ଗୋଟିଏ ଗରିବ ଘରର ଝିଅ, ଦୁଇ ସାଙ୍ଗ ଥିଲେ। ଦୁହେଁ ଦୁହିଁକୁ ଘଡିଏ ନ ଦେଖିଲେ ରହି ପାରୁନଥିଲେ। ଏମାନଙ୍କର ବନ୍ଧୁତା ଦେଖି ଗାଁର ଲୋକେ ଈର୍ଷାପରାୟଣ ହୋଇ ପଡୁଥିଲେ।

ଦୁଇ ସାଙ୍ଗ ଜଙ୍ଗଲକୁ କାଠ ସଂଗ୍ରହ ପାଇଁ ଯାଆନ୍ତି ଓ ସେଠାରେ ସୁଖଦୁଃଖ ହୁଅନ୍ତି। ଧନୀ ଘରର ଝିଅ ଦେହରେ ବହୁତ ଗହଣା ପିନ୍ଧିଥିଲା। କିନ୍ତୁ ଗରିବ ଘରର ଝିଅର ଆଦୌ ସୁନା ଗହଣା ନଥିଲା।

ଦିନେ ଗରିବ ଘରର ଝିଅ ତା ମାଉସୀ ଘରକୁ ମେଳା ଦେଖିବାକୁ ବୁଲିଗଲା। ତେଣୁ ସେ ତାର ଧନୀ ସାଙ୍ଗକୁ ତାର ସୁନା ଗହଣା ଦୁଇ ଦିନ ପାଇଁ ତାକୁ ଦେବାକୁ କହିଲା। ଧନୀ ସାଙ୍ଗ ସୁନା ଗହଣା ଦେବା ପାଇଁ ହଁ ଭରିଲା, ମାତ୍ର ତାର ଆୟା ବଡ଼ ଦୁଷ୍ଟ ଥିବାରୁ ତାକୁ

ଲୁଚେଇକି ଦେବା ପାଇଁ କହିଲା । ଧନୀ ସାଙ୍ଗର ଆୟୁ ବଡ଼ ଦୁଷ୍ଟ ବୋଲି ଗରିବ ସାଙ୍ଗ ମଧ୍ୟ ଜାଣିଥିଲା ।

ତେଣୁ ଧନୀ ସାଙ୍ଗ ତାର ଗରିବ ସାଙ୍ଗକୁ କହିଲା: ଆଜି ରାତିକି ତୁ ଆମ ଘରକୁ ଆସି କାନ୍ଥ କଣା ଦେଇ ହାତ ବଢେଇ ଡାକିବୁ । ତା ପରେ ମୁଁ ଲୁଚିଲୁଚି ମୋ ଗହଣା ତତେ ଦେବି । ତୁ ନେଇକି ତୁରନ୍ତ ସେଠାରୁ ଚାଲିଯିବୁ ।

ଧନୀ ସାଙ୍ଗର ଏହି କଥାରେ ଗରିବ ସାଙ୍ଗ ରାଜି ହେଲା । ସେମାନଙ୍କ ଯୋଜନା ଅନୁଯାୟୀ, ଗରିବ ସାଙ୍ଗ ରାତିକି ଧନୀ ସାଙ୍ଗର ଘରକୁ ଯିବାର ଥିଲା ।

ଜଙ୍ଗଲରେ ଧନୀ ସାଙ୍ଗ ଓ ଗରିବ ସାଙ୍ଗ ହେଉଥିବା ଏହି କଥାବାର୍ତ୍ତାକୁ ଠେକୁଆଟିଏ ଶୁଣିଦେଲା । ତେଣୁ ସେ ଠିକ୍ ସନ୍ଧ୍ୟାବେଳକୁ ଯାଇ ଧନୀ ସାଙ୍ଗର ଘରେ ପହଞ୍ଚି ଗଲା ।

ଠେକୁଆଟି ଧନୀ ଝିଅର ଘର ନିକଟରେ ପହଞ୍ଚି ଧନୀ ଝିଅ ଉଦ୍ଦେଶ୍ୟରେ ଡାକିଲା: ସାଙ୍ଗ, ସାଙ୍ଗ ମୁଁ ଆସିଛି । ଗହଣା ଦେ । ମୁଁ ନେଇକି ଏଠୁ ତୁରନ୍ତ ଚାଲିଯିବି ।

ଧନୀ ସାଙ୍ଗ ଠେକୁଆର ଏ କାରସାଦି ବୁଝି ପାରିଲା ନାହିଁ । ତେଣୁ ତାର ସୁନା ଗହଣାତକ କାନ୍ଥ କଣା ବାଟେ ଠେକୁଆଟିକୁ ଦେଇଦେଲା । ଠେକୁଆଟି ସୁନା ଗହଣାତକ ପାଇ ବେଶ୍ ଖୁସିରେ ସେଠାରୁ ଜଙ୍ଗଲକୁ ଚାଲିଗଲା ।

ଏହାର କିଛି ସମୟ ପରେ ଗରିବ ସାଙ୍ଗ ଆସି ଧନୀ ସାଙ୍ଗ ଘର ନିକଟରେ ପହଞ୍ଚିଲା । ଧନୀ ସାଙ୍ଗକୁ ଡାକିଲା: ସାଙ୍ଗ, ସାଙ୍ଗ ମୁଁ ଆସିଛି, ଗହଣା ଦେ । ତୁରନ୍ତ ମୁଁ ଏଠାରୁ ନେଇକି ଚାଲିଯିବି ।

ଏହା ଶୁଣି ଧନୀ ସାଙ୍ଗର ରାଗ ହେଲା । ପୁଣି କାହିଁକି ସାଙ୍ଗ ଆସି ଗହଣା ମାଗୁଛି । ସେ ଗହଣାତକ ତାକୁ ଦେଇଦେଲା । ତେବେ ସେ ପୁଣି କାହିଁକି ଲୋଭ କରୁଛି । ଏ କଥା ଭାବି ଧନୀ ସାଙ୍ଗ ଗରିବ ସାଙ୍ଗ ଉପରେ ରାଗ କଲା ।

ଗରିବ ସାଙ୍ଗ ପୁଣି ବାରମ୍ବାର ଡାକିଲା । ଧନୀ ସାଙ୍ଗ ରାଗିକି ବାହାରକୁ ଆସି କହିଲା: ତତେ ପରା ମୁଁ ଏବେ ଗହଣାତକ ଦେଲି । ପୁଣି କୁଆଡେ ଆସିଛୁ । ଏତେ ଲୋଭ କାହିଁକି କରୁଛୁ କହିଲୁ । ଗରିବ ସାଙ୍ଗ ଧନୀ ସାଙ୍ଗର ଏହି କଥାରେ ଆଶ୍ଚର୍ଯ୍ୟ ହୋଇଗଲା । ତାକୁ ତ ସୁନା ଗହଣା ଦେଇନି । ତେବେ ସୁନା ଗହଣା ଦେଇଛି ବୋଲି ମିଛରେ କହୁଛି ।

ଏମିତି ଏମିତି ଦୁଇ ସାଙ୍ଗ ମଧ୍ୟରେ ଯୁକ୍ତିତର୍କ ବଢିଗଲା । ଦୁହେଁ ମାଡଗୋଳ ହେଲେ ଓ ଧସ୍ତାଧସ୍ତି ହେଲେ । ଗାଁ ଲୋକ ସେଠାରେ ଆସି ଜୁଣ୍ଟ ହୋଇଗଲେ ।

ଘଟଣା ସମ୍ପର୍କରେ ଜାଣି ଗାଁ ଲୋକେ ଗରିବ ଝିଅକୁ ଦୋଷ ଦେଲେ । ଗରିବ ଝିଅ ଧନୀ ଝିଅର ଗହଣାକୁ ଦେଖି ଲୋଭ କରି ନେଇ ଯାଇଛି ବୋଲି ଗାଁ ଲୋକେ କହିଲେ । ସେମାନେ ଗରିବ ଝିଅକୁ ଦୋଷ ଦେଇ ସବୁତକ ସୁନା ଗହଣା ଫେରେଇ ଦେବାକୁ ଗରିବ ଝିଅକୁ କହିଲେ ।

ବିଚରା ଗରିବ ଝିଅ ସୁନା ଗହଣା ପିନ୍ଧିବାକୁ ଲୋଭ କରିବାରୁ ଏତକ ଫଳ ଫଳିଲା ବୋଲି ଭାବି ମନ ଦୁଃଖ କଲା । ସେ କେଉଁଠୁ ଏତେ ସୁନା ଗହଣା ଆଣି ଧନୀ ଝିଅକୁ ଦେବ ବୋଲି ଭାବିଭାବି ଦୁଃଖରେ ଭାଙ୍ଗି ପଡିଲା ।

ତେବେ ଏ କଥାକୁ ଗାଁର ଜଣେ ବୁଢା ଲୋକ ସହଜରେ ବିଶ୍ୱାସ କରିପାରିଲା ନାହିଁ। ଗରିବ ଝିଅ କେବେବି ଏମିତି କାମ କରି ନଥିବ ବୋଲି ବୁଢା ଲୋକଟି ଚିନ୍ତା କଲା । ତେବେ ସେ କ'ଣ କରିପାରିବ ବୋଲି ଭାବି ଭାବି ଚୁପ୍ ରହିଲା ।

ଏଣେ ଠେକୁଆଟି ଧନୀ ଝିଅ ପାଖରୁ ସୁନା ଗହଣାତକ ନେଇକି ମହା ଆନନ୍ଦରେ ନିଜେ ପିନ୍ଧିକି ଜଙ୍ଗଲରେ ବୁଲିଲା । ଗହଣାତକ ପିନ୍ଧି ଖୁସିରେ ଜଙ୍ଗଲରେ ନାଚିଲା । ସେଦିନ ଗାଁର ଏହି ବୁଢା ଲୋକଟି ଜଙ୍ଗଲକୁ ଯାଇଥାଏ। ଠେକୁଆଟି ନାଚୁଥିବାବେଳେ ତା ପାଦ, ହାତ ରୁଣୁଝୁଣୁ ଶବ୍ଦ କଲା। ଠେକୁଆଟି ଦେହରୁ ରୁଣୁଝୁଣୁ ଶବ୍ଦ ବାହାରୁଥିବାର ଦେଖି ବୁଢାଟି ଆଶ୍ଚର୍ଯ୍ୟ ହେଲା। ତେବେ ସେ ଭଲ କରି ଠେକୁଆଟିକୁ ଦେଖିବାରୁ ଜାଣି ପାରିଲା ଯେ, ଠେକୁଆଟି ବହୁତ ପ୍ରକାର ସୁନା ଗହଣା ପିନ୍ଧିଛି।

ବୁଢା ମନରେ ସନ୍ଦେହ ହେଲା, ଠେକୁଆଟି ସୁନା ଗହଣା କେଉଁଠୁ ପାଇଲା । ବହୁତ ସମୟ ଭାବିଭାବି ସେ ନିଶ୍ଚିତ ହେଲା ଯେ, ଏହି ଠେକୁଆଟି ଧନୀ ଘରର ଝିଅ ପାଖରୁ ତାର ସାଙ୍ଗ ନାଁରେ ସୁନା ଗହଣାତକ ନେଇ ଯାଇଛି। ବିଚାରୀ ଗରିବ ଝିଅକୁ ସମସ୍ତେ ଦୋଷ ଦେଉଛନ୍ତି। ତେଣୁ ସେ ଏହି ଠେକୁଆଟିକୁ ଧରିବାକୁ ଚେଷ୍ଟା କଲା ।

ପରଦିନ ବୁଢାଟି ଜାଲ ବିଛେଇ ଏକ ବୁଦା ମୂଳେ ଛକି ବସିଲା । ଠେକୁଆଟି ନାଚିନାଚିକା ସେହି ବାଟ ଦେଇ ଯାଉଥିବାବେଳେ ଜାଲରେ ଛନ୍ଦି ହୋଇ ପଡିଗଲା । ବୁଢାଟି ଠେକୁଆଟିକୁ ଧରି ସିଧା ଗାଁକୁ ନେଇ ଆସିଲା । ଧନୀ ଘରର ଝିଅ ସମେତ ଗାଁ ଲୋକଙ୍କୁ ଡାକି ବୁଢା ଏହି ଠେକୁଆଟିକୁ ଦେଖାଇଲା। ଠେକୁଆଟି ଗୋଡରେ, ହାତରେ, କାନରେ ଓ ନାକରେ ସୁନା ଗହଣାତକ ଦେଖି ଗାଁ ଲୋକେ ଆଶ୍ଚର୍ଯ୍ୟ ହେଲେ। ତେବେ ଏହି ସୁନା ଗହଣାତକ ଧନୀ ଝିଅର ବୋଲି ନିଜେ ଧନୀ ଝିଅ ଚିହ୍ନି ପାରିଲା ।

ଧନୀ ଝିଅ ଏବେ ବୁଝି ପାରିଲା, ସେମାନଙ୍କ ମଧ୍ୟରେ ହୋଇଥିବା କଥାବାର୍ତ୍ତାକୁ ଶୁଣି ଦେଇ ଠେକୁଆ ସାଙ୍ଗ ବାହାନାରେ ଆସି ସୁନା ଗହଣାତକ ନେଇ ଯାଇଥିଲା । ତେବେ ସେ ଅଯଥାରେ ତାର ନିର୍ଦ୍ଦୋଷ ଓ ସରଳ ସାଙ୍ଗକୁ ଦୋଷୀ କରିବାକୁ ନିଜକୁ ଧିକ୍କାର କଲା । ସେ ନିଜର ଭୁଲ ବୁଝି ପାରିଲା ଏବଂ ସାଙ୍ଗ ପାଖରେ ଯାଇ କ୍ଷମା ମାଗିଲା । ଗାଁ ଲୋକେ ବି ବୁଝି ପାରିଲେ ଏହି ଠେକୁଆଟି ଗହଣାତକ ନେଇ ଯାଇଥିଲା । ତେଣୁ ଗାଁ ଲୋକେ ରାଗିକି ଏହି ଠେକୁଆଟିକୁ ମାରି ଦେଇ ଗହଣାତକ ଉଦ୍ଧାର କଲେ।



ବୁଢା ବୁଢିକୁ କହିଲା: ଆଲୋ ବୁଢି, ଆମର ତ ପିଲାପିଲି ନାହାନ୍ତି। ଆମକୁ ବାପା, ମାଆ ଡାକିବାକୁ କେହି ନାହାନ୍ତି। ତେବେ ଆମ ଗାଁ ତଳେ ଥିବା ରାବଣ ଡଙ୍ଗରୀରେ ଗୋଟିଏ କୁଡୁରୁଙ୍ଗା ଚଢେଇ ରହୁଛି। ସେ ଅବିକଳ ମଣିଷ ଭଳି ବ୍ୟବହାର କରେ। ମଣିଷ ଭଳି ଦାଦା, ଖୁଡି, ଆତା, ଆୟୀ, ବୁଆ ସବୁ ଡାକି ପାରୁଛି। ଆମେ ଏହି ଚଢେଇଟିକୁ ଆଣି ପୋଷିଲେ ସେ ଆମର ପୁଅ ଭଳି ରହିବ।

ବୁଢାର ଏହି କଥାରେ ବୁଢି ଶରଧା ହୋଇଗଲା। କଥାଟା ତା ମନକୁ ପାଇଲା। ତେଣୁ ସେ କୁଡୁରୁଙ୍ଗା ଚଢେଇ ସମ୍ପର୍କରେ ଜାଣିବାକୁ ଇଚ୍ଛା କଲା।

କୁଡୁରୁଙ୍ଗା ଚଢେଇ କେମିତିକା, ସେ ଖାଏ କ'ଣ, ରହେ କେଉଁଠି ଏମିତି ଏମିତି ବହୁତ ପ୍ରଶ୍ନ ବୁଢି ବୁଢାକୁ ପଚାରିଲା। ବୁଢା କହିଲା: କୁଡୁରୁଙ୍ଗା ଚଢ଼େଇ କୁକୁଡା ମାଂସ ତର୍କାରୀ ଖାଏ। ତାକୁ କୁକୁଡା ମାଂସ ତର୍କାରୀ ଦେଲେ ସେ ଆମ ଘରକୁ ଆସିବ।

ବୁଢାର ଏହି କଥା ଶୁଣି ବୁଢି ପ୍ରଥମ ଦିନ ତାର କୁକୁଡାମାନଙ୍କ ମଧ୍ୟରୁ ଗୋଟିଏ କୁକୁଡା ମାରି ମାଂସ ତର୍କାରୀ କଲା। ତର୍କାରୀ କରି ସାରିବା ପରେ ବୁଢି ବୁଢା ହାତରେ ମାଂସ ତର୍କାରୀ ଓ ଭାତ କୁଡୁରୁଙ୍ଗା ଚଢେଇକୁ ଖାଇବାକୁ ଦେଇ ପଠେଇଲା। ବୁଢା ମାଂସ ତର୍କାରୀ ଓ ଭାତ ନେଇ ରାବଣ ଡଙ୍ଗରୀକୁ ଗଲା ଓ ସେଠାରେ ଯାଇ ଆରାମରେ ମାଂସ ଝୋଳ ଖାଇଲା। ମନ ଶାନ୍ତିରେ ଘରକୁ ଫେରିଲା।

ବୁଢା ବୁଢିକୁ ଠକି କୁକୁଡା ମାଂସ ଖାଇଥିବାରୁ ମନେମନେ ଭାରି ଖୁସି ଥାଏ। ଏଣେ ବୁଢି ବି ଖୁସି ଥାଏ। ତାର ଘରକୁ କୁଡୁରୁଙ୍ଗା ଚଢେଇ ଆସିବ। ତାର ପିଲା ଭଳି ଘରେ ରହିବ। ତାକୁ ଆୟୀ ବୋଲି ଡାକିବ। ବୁଢି ଅଧିକରୁ ଅଧିକ ଖୁସି ହୋଇ ପଡୁଥାଏ।

ଦିନେ ବୁଢା ପୁଣି କହିଲା: କୁଡୁରୁଙ୍ଗା ଚଢେଇକୁ ଏଣିକି ସବୁଦିନ ମାଂସ ଦେବାକୁ ହେବ। କୁକୁଡା ମାଂସ ଖାଇଲେ କୁଡୁରୁଙ୍ଗା ଶାନ୍ତ ହୋଇ ଆମ ଘରକୁ ଆସିବ। ବୁଢି ବୁଢା କଥାକୁ ବିଶ୍ୱାସ କରି ପୁଣି ଗୋଟିଏ କୁକୁଡା ମାରି ତର୍କାରୀ କରି ବୁଢା ହାତରେ କୁଡୁରୁଙ୍ଗା ପାଖକୁ ପଠେଇଲା। ବୁଢା ତର୍କାରୀତକ ନେଇ ନିଜେ ଖାଉଥାଏ। ଏମିତି ଏମିତି ବୁଢି ତାର ସବୁତକ କୁକୁଡା ମାରି ତର୍କାରୀ କରି କୁଡୁରୁଙ୍ଗା ଚଢେଇ ପାଖକୁ ପଠାଉଥାଏ। କିନ୍ତୁ ବୁଢା ସବୁତକ ମାଂସ ଖାଇ ମହା ଖୁସିରେ ଥାଏ।

ବୁଢିର ସବୁତକ କୁକୁଡା ସରିଗଲା ପରେ ବୁଢି ବୁଢାକୁ କହିଲା: ମୁଁ ନିଜେ ରାବଣ ଡଙ୍ଗରୀରେ ରହୁଥିବା କୁଡୁରୁଙ୍ଗା ଚଢେଇ ପାଖକୁ ଯିବି ଏବଂ ତାକୁ ମୋ ଘରକୁ ଆସିବାକୁ କହିବି। ବୁଢିର ଏ କଥା ଶୁଣି ବୁଢାର ଚିନ୍ତା ବଢିଗଲା। ତେବେ ସେ ସାହସ ସଞ୍ଚୟ କରି ବୁଢିକୁ ରାବଣ ଡଙ୍ଗରୀକୁ ନେଇକି ଯିବାକୁ ରାଜି ହେଲା।

ବୁଢା ବୁଢିକୁ କହିଲା: ଲୋ, ବୁଢି ତୁ କୁଡୁରୁଙ୍ଗା ଚଢେଇ ଦେଖିବାକୁ ଯିବୁ, ତେଣୁ ତୁ ସାଙ୍ଗରେ ଏକ ପାଚିଆଟିଏ ନେଇକି ଯାଇଥା। ତୁ ପାଚିଆକୁ ମୁଣ୍ଡେଇ ତଳକୁ ମୁହଁ କରି

ବସିଥିବୁ। ମୁଁ ଗଛ ଉପରକୁ ଚଢିବି ଏବଂ କୁଡୁରୁଙ୍ଗା ଚଢେଇକୁ ଆଣି ତୋ ପାଚିଆ ମଧ୍ୟରେ ରଖିଦେବି। ତୁ ସେଇ ଗଛ ନିକଟରୁ ଘର ପର୍ଯ୍ୟନ୍ତ ପାଚିଆଟିକୁ ବୋହି ବୋହି ଯିବୁ।

ବୁଢି ବୁଢାର ଏ କଥାରେ ରାଜି ହେଲା। ବୁଢି ତାର ପାଚିଆଟିକୁ ମୁଣ୍ଡରେ ଥୋଇ ତଳକୁ ମୁହଁ କରି ବସିଥାଏ। ବୁଢା ନିଜେ ସେହି ପାଚିଆରେ ବସିଗଲା ଏବଂ କହିଲା: ବୁଢି କୁଡୁରୁଙ୍ଗା ଚଢେଇ ତୋ ପାଚିଆରେ ବସି ସାରିଲାଣି। ଏତର ତୁ ଉପରକୁ ନ ଅନେଇ ତଳକୁ ଚାହିଁ ଚାହିଁ ଘର ପର୍ଯ୍ୟନ୍ତ ଚାଲିବା ଆରମ୍ଭ କର। ବୁଢି ବୁଢାର କଥା ଅନୁଯାୟୀ, କୁଡୁରୁଙ୍ଗା ଚଢେଇକୁ ମୁଣ୍ଡେଇ ମୁଣ୍ଡେଇ ନେଉଛି ଭାବି ତାର ବୁଢା ସ୍ୱାମୀକୁ ମୁଣ୍ଡେଇ ମୁଣ୍ଡେଇ ଘର ପର୍ଯ୍ୟନ୍ତ ଚାଲିଲା।

ଗାଁରେ ଲୋକେ ଏହା ଦେଖି ହସିବାକୁ ଲାଗିଲେ। ପିଲାମାନେ ବୁଢିକୁ ଚିଡେଇ ଚିଡେଇ କହିଲେ: ହେଇରେ ଦେଖ, ବୁଢି କେମିତି ତା ବୁଢାକୁ ମୁଣ୍ଡେଇ ମୁଣ୍ଡେଇ ନେଉଛି। ବୁଢି ପିଲାମାନଙ୍କ କଥାକୁ ବିଶ୍ୱାସ ନକରି ସେମାନଙ୍କୁ କହିଲା: ତମେ ମାନେ ଦୁଷ୍ଟ ପିଲା, ମୁଁ ପରା କୁଡୁରୁଙ୍ଗା ଚଢେଇକୁ ନେଇଛି। ସେ ମୋର ପିଲା ହୋଇକି ଆମ ଘରେ ରହିବ।

ବୁଢିର କଥା ଶୁଣି ପିଲାମାନେ କିରିକିରି ହୋଇ ହସିଲେ। ପିଲାମାନେ ଏମିତି ଥଟା କରିବାରୁ ବୁଢିକୁ ଭାରି ରାଗ ହେଲା। ବୁଢି ଅଧିକ ରାଗିଯାଇ ମୁଣ୍ଡରେ ଧରିଥିବା ପାଚିଆକୁ ତଳେ କଚାଡି ଦେଲା।

ବୁଢି ପାଚିଆଟିକୁ ତଳେ କଚାଡି ଦେବାରୁ ସେଥିରେ ମହା ଆରାମରେ ବସିଥିବା ବୁଢା ମଧ୍ୟ ତଳେ କାଚି ହୋଇଗଲା। ବୁଢାର ହାତ, ଗୋଡ ଭାଙ୍ଗିଗଲା। ବୁଢା ବୁଢିକୁ ଠକିଥିବାରୁ ତାର ଫଳ ନିଜେ ଭୋଗିଲା। ହାତ, ଗୋଡ ଭାଙ୍ଗିଯିବାରୁ ବୁଢା ବହୁ ଦିନ ଧରି ବିଛଣାରେ ପଡି ରହିଲା। ତାର କୁକୁଡା ମାଂସ ଖିଆ ସବୁ ବାହାରିଗଲା। ବୁଢାର ହାତ ଗୋଡ ଭାଙ୍ଗିଯିବାରୁ ବୁଢି ମଧ୍ୟ ବହୁତ ମନ ଦୁଃଖ କଲା।







# ମଣିଷ ପିଲା ଓ ମାଙ୍କଡ଼ ଦୁଇ ସାଙ୍ଗ

(ନବରଙ୍ଗପୁର, ଗଣ୍ଡ ଲୋକ କଥା)

ଗୋଟିଏ ଗାଁରେ ମା ପୁଅ ଦୁଇ ଜଣ ରହୁଥିଲେ। ଗରିବ ମାଟି ଗାଁରେ କୁଲିମକୁରୀ କରି ଛୁଆଟିକୁ ପୋଷୁଥିଲା। ଆ ତାର ଧାନ କୁଟି ପୁଅଟିକୁ ପାଳୁଥିଲା। ଯାହା କିଛି ମାଗିଯାଚି ଚଳୁଥିଲା, ସେଥିରୁ କିଛି ପଇସା ଘରେ ରଖିଥିବା କୁଣ୍ଡିରେ ସଞ୍ଚୟ କରି ରଖୁଥିଲା।

ଦିନେ ବୁଢି ପର ଘରକୁ ଧାନ କୁଟି ଯାଇଛି, ଏହି ସମୟରେ ଏକ ମାଙ୍କଡବାଲା ଆସି ପହଞ୍ଚିଲା। ମା ନଥିବାରୁ ମାଙ୍କଡାବାଲା ପିଲାଟିକୁ କହିଲା: ବୁଝିଲୁ ପୁଅ, ଏହି ମାଙ୍କଡ଼ଟିକୁ ନେବୁକି? ଏହା ତୋର ବହୁ ଉପକାର କରିବ। ତୋତେ ରୋଜଗାର କରିଦେବ। ତମ ଗରିବ ମା ପୁଅକୁ ଧନ ରୋଜଗାର କରି ତମକୁ ବହୁ ପ୍ରକାର ସାହାଯ୍ୟ କରିବ ଏହି

ମାଙ୍କଡ଼। ତେଣୁ ଏହି ମାଙ୍କଡଟିକୁ ନେବୁକି? ଏହା କହି ମାଙ୍କଡ଼ବାଲାଟି ପିଲାଟିକୁ ତା ପାଲରେ ପକେଇଦେଲା।

ପିଲାଟିର ମାଙ୍କଡ ରଖିବାକୁ ଭାରି ଇଚ୍ଛା ହେଲା। ପିଲାଟି ମା ସଞ୍ଚିଥିବା କୁଣ୍ଡିଟିକୁ ଭାଙ୍ଗି ସବୁତକ ପଇସା ଦେଇ ମାଙ୍କଡ଼ବାଲାଟି ପାଖରୁ ମାଙ୍କଡ଼ କିଣିଲା। ମାଙ୍କଡ଼ବାଲାଟି ମାଙ୍କଡ଼ ଦେଇ ଦେବାପରେ ସେଠାରୁ ପଳେଇଗଲା। ପିଲାଟି ମାଙ୍କଡକୁ ଘର ଖୁଣ୍ଟରେ ବାନ୍ଧି ରଖି ଆନନ୍ଦିତ ହେଲା। ତା ସାଙ୍ଗରେ ଖେଳିଲା। କିଛି ସମୟ ପରେ ମା ଯାଇ ତା ଘରୁ କାମଧନ୍ଦା କରି ଫେରିଲା। ଦେଖିଲା ଘରେ ମାଙ୍କଡ଼ଟିଏ ବନ୍ଧା ହୋଇଛି।

ମା ପଚାରିଲା ପୁଅରେ: ଏ ମାଙ୍କଡ଼ କେଉଁଠୁ ଆସିଲା।

ପୁଅ କହିଲା: ମାଙ୍କଡ଼ଟିକୁ କିଣିଲି ମା।

ମା କହିଲା: ପଇସା କେଉଁଠୁ ପାଇଲୁ, ମାଙ୍କଡ଼କୁ କିଣିଲୁ?

ପୁଅ କହିଲା: କୁଣ୍ଡିରେ ଯେଉଁ ପଇସାତକ ଥିଲା, ତାକୁ ଦେଇ କିଣିଲି।

ପୁଅଠାରୁ ଏହା ଶୁଣି ମା ଅତ୍ୟନ୍ତ ରାଗିଗଲା ଏବଂ ତାକୁ ଗାଳିଗୁଲଜ କଲା। କହିଲା ଏହି ମାଙ୍କଡଟିକୁ ଘରକୁ ଆଣି କି ଲାଭ ପାଇବୁ। ସବୁତକ ଟଙ୍କା ଦେଇଦେଲୁ। ଆମେ କେମିତି ଚଳିବା। ଏହା ଛଡା ଏ ବେକାର ମାଙ୍କଡ଼ଟା ଆମର କି ଉପକାରରେ ଆସିବ। ଅଯଥା ତାକୁ ପୋଷିବାକୁ ହେବ।

ଏହା କହି ମା ପୁଅକୁ ଗାଳିଗୁଲଜ କରିବା ସହିତ ମାରଧର ମଧ୍ୟ କଲା। ପୁଅ କାନ୍ଦିକାନ୍ଦି ଯାଇ ଘର କୋଣରେ ବସି ରହିଲା। ସେଦିନ ପୁଅ ଆଉ ଖାଇଲା ନାହିଁ।

ମାଙ୍କଡ଼ ଏହାସବୁ ଦେଖୁଥାଏ ଓ ଶୁଣୁଥାଏ। ତା ପାଇଁ ଛୋଟ ପିଲାଟି ମାଡ ଖାଇଲା। ତା ପାଇଁ ସେ ନଖାଇ ନ ପିଇ ଓପାସ ରହିଲା। ମା ତାକୁ ବେକାର ପ୍ରାଣୀଟିଏ ଭାବୁଛି। ଏମିତି ଭାବି ମାଙ୍କଡ଼ ମନ ଦୁଃଖ କଲା। ଏହା ସତ୍ତ୍ୱେ ପିଲାଟି ମାଙ୍କଡ଼କୁ ଘରେ ପୋଷିଲା। ବହୁ କଷ୍ଟ କରି ଏଣୁତେଣୁ ଖାଦ୍ୟ ଆଣି ତାକୁ ଦେଲା। ତା ସାଙ୍ଗରେ ମୈତ୍ର ବସିଲା। ଦୁହେଁ ବହୁତ ସାଙ୍ଗ ହେଲେ। ପିଲାଟି ନଖାଇଲେ ମାଙ୍କଡ଼ ମଧ୍ୟ ଖାଉ ନଥିଲା। ମାଙ୍କଡ଼ ନଖାଇଲେ ପିଲାଟି ମଧ୍ୟ ଖାଉ ନଥିଲା। ମା କିନ୍ତୁ ମାଙ୍କଡ଼ ଘରେ ରହିବାରୁ ଚିଡିଚିଡ଼ି ହେଲା ଏବଂ ପୁଅର ଖାଇବା ବନ୍ଦ କରିଦେଲା। ପୁଅକୁ ପୋଷାକପତ୍ର ମଧ୍ୟ ଦେଲାନି। ପୁଅ ଭାରି କଷ୍ଟ ପାଇଲା।

ଏହା ଦେଖି ଦିନେ ମାଙ୍କଡ଼ ତାର ସାଙ୍ଗକୁ କହିଲା: ସାଙ୍ଗ ମୁଁ ତମର କଷ୍ଟ ଆଉ ଦେଖିପାରିବିନି। ମୋତେ ଖୋଲିଦିଅ, ମୁଁ ଯାଇ ତମ ପାଇଁ ଟଙ୍କା, ସୁନା, ଧନରତ୍ନ ନେଇ ଆସିବି। ତମେମାନେ ଆଉ କଷ୍ଟ କରିବ ନାହିଁ। ମା ଆଉ କାହାର ପାଇଟି କରିବ ନାହିଁ। ମୁଁ ଏଣିକି ରୋଜଗାର କରି ଘର ଚଳେଇବି।

ମାଙ୍କଡ଼ର ଏହି କଥା ଶୁଣି ପିଲାଟିର ପ୍ରଥମେ ବିଶ୍ୱାସ ହେଲାନି। କହିଲା: ତତେ ଯଦି

ଖୋଲିଦିଏ, ତୁତ ଜଙ୍ଗଲୀ ପ୍ରାଣୀ, ଯଦି ତୁ ପଳେଇଯିବୁ ଓ ଆଉ ଆସିବୁନି ତେବେ କ'ଣ ହେବ। ମୋର ମନ ଦୁଃଖ ହେବ ଏବଂ ମୋର ସବୁତକ ପଇସା ବୁଡିଯିବ। ମା ମୋ ଉପରେ ଆହୁରି ଅଧିକ ରାଗିବ। ମାଙ୍କଡ଼ ପାଙ୍ଗର ଏହି କଥା ଶୁଣି ମନ ଦୁଃଖ କଲା ଏବଂ କହିଲା: ମୋତେ ବିଶ୍ୱାସ କର। ଏହା ପରେ ପିଲାଟି ମାଙ୍କଡ଼କୁ ଖୋଲି ଦେଲା। ମାଙ୍କଡ଼ ଡେଇଁଡେଇଁକା ବଣକୁ ଚାଲିଗଲା।

ମାଙ୍କଡ଼ ଚାଲିଗଲା ପରେ ମା ଆସି ପୁଅକୁ ମାଙ୍କଡ଼ ସମ୍ପର୍କରେ କହିଲା। ମାଙ୍କଡ଼ କୁଆଡେ ଗଲା ବୋଲି ମା କହିଲା। ମାଙ୍କଡ଼କୁ ଜଙ୍ଗଲକୁ ଛାଡି ଦେଇଛି। ମାଙ୍କଡ଼ ଆମ ପାଇଁ ଟଙ୍କା, ସୁନା ରୋଜଗାର କରି ଆଣିବ ବୋଲି କହି ଯାଇଛି। ତେଣୁ ମୁଁ ତାକୁ ଖୋଲିଦେଇଛି। ଏହା ଶୁଣି ମା ଆହୁରି ରାଗିଗଲା। ସବୁ ଟଙ୍କା ନଷ୍ଟ କରିଦେଲୁ ବୋଲି ମା ପୁଅ ଉପରେ ରାଗିଲା।

ଏହା ମଧ୍ୟରେ ମାଙ୍କଡ ଜଙ୍ଗଲର ଏକ ବରଗଛ ନିକଟକୁ ଗଲା ଏବଂ ଗଛଟି ଉପରେ ଚଢି ବସିଲା। ଏହି ସମୟରେ ଦଳେ ଡକାୟତ ସେହି ଗଛମୂଳେ ଆସି ଜମା ହେଲେ। ସେମାନେ ଆଣିଥିବା ସୁନା, ଟଙ୍କାତକ ସେହି ଗଛ ମୂଳେ ପୋତିଦେଇ ସେମାନେ ପୁଣି ଚୋରି କରିବାକୁ ଚାଲିଗଲେ। ଚୋରମାନେ ଚାଲିଯିବା ପରେ ମାଙ୍କଡ଼ ଗଛରୁ ଓହ୍ଲାଇଲା। ଚୋରମାନେ ପୋତିଥିବା ଟଙ୍କା, ସୁନା, ଧନରତ୍ନକୁ ଖୋଳିଲା। ଏବଂ ସାଥୀରେ ଧରି ଘରକୁ ଫେରିଲା। ଘରେ ପହଞ୍ଚି ମାଙ୍କଡ଼ ମାକୁ ସବୁତକ ଟଙ୍କା, ସୁନା ଦେବା ପରେ ମା ଏତେ ଟଙ୍କା, ସୁନା ଦେଖି ଖୁସି ହୋଇଗଲା। ପୁଅ ମଧ୍ୟ ମାଙ୍କଡ଼କୁ ଦେଖି ଖୁସି ହୋଇଗଲା। ମାଙ୍କଡ଼ ଆଣିଥିବା ସୁନା, ଟଙ୍କାରେ ଧୀରେ ମା ପୁଅ ଧନୀ ହେବାରେ ଲାଗିଲେ। ମା ଆଉ ଗାଁରେ ପାଇଟି କରିବାକୁ ଗଲାନାହିଁ। ମା, ପୁଅ ଏକ ନୂଆ କୋଠାଘର ନିର୍ମାଣ କଲେ। ମାଙ୍କଡ଼ ଏମିତି ପ୍ରତିଦିନ ଯାଇ ସୁନା, ଟଙ୍କା ଧରି ଆସିଲା। ଦିନକୁ ଦିନ ମା, ପୁଅଙ୍କର ଅଚଳାଚଳ ସମ୍ପତ୍ତି ହୋଇଗଲା। ସେମାନେ ଖୁସିରେ ରହିଲେ।







# କଙ୍କଡ଼ା କାହାଣୀ

(ନବରଙ୍ଗପୁର, ଗଣ୍ଡ ଲୋକ କଥା)

ନଦୀ ପଠାରେ କଙ୍କଡ଼ା ଓ କଙ୍କୁଡୁଣୀ ଦୁହେଁ ରହୁଥିଲେ। ଦୁହେଁ ଦୁହିଁକୁ ଭାରି ଭଲ ପାଉଥିଲେ। ସେମାନେ ପରସ୍ପରକୁ ଏତେ ମାତ୍ରାରେ ଭଲ ପାଉଥିଲେ, ଘଡ଼ିଏ କିଏ କାହାକୁ ନ ଦେଖିଲେ ରହି ପାରୁ ନଥିଲେ।

କିନ୍ତୁ ଭାଗ୍ୟର ବିଡ଼ମ୍ବନା। ହଠାତ୍ ଦିନେ ମାଈ କଙ୍କଡ଼ାଟି ମରିଗଲା। କଙ୍କଡ଼ା ତାର ପତ୍ନୀର ମୃତ୍ୟୁରେ ଭାଙ୍ଗି ପଡ଼ିଲା।

କଙ୍କଡ଼ା ତାର ଧର୍ମ ପତ୍ନୀର ଶବକୁ ବୋହି ବୋହି ମନ କଷ୍ଟରେ ସତ୍କାର କରିବାକୁ ନେଉଥିଲା। ଏହି ସମୟରେ ସେଇ ବାଟ ଦେଇ ଗାଈଟିଏ ଯାଉଥିଲା।

କଙ୍କଡ଼ାର ଏହି ଦୁଃଖଦ ଅବସ୍ଥାକୁ ଦେଖି ଗାଈଟି ଖେପା କରି କହିଲା: କିହୋ, କଙ୍କଡ଼ା ଭାଇ ତମର କ'ଣ ହୋଇଛିକି? ଆଜି ଭାରି ମନ ଦୁଃଖ କରିଲା ଭଳି ଲାଗୁଛ।

ଦୁଃଖରେ ମ୍ରିୟମାଣ କଙ୍କଡ଼ା ଗାଈର ଏହି ଉଦ୍ଧତ ବ୍ୟବହାରରେ କ୍ଷୁବ୍ଧ ହୋଇଗଲା ଏବଂ ତାକୁ କହିଲା: ରେ, ଦୁଷ୍ଟ ଗାଈ, ମୋର ଏହି ଦୁଃସମୟରେ ତୁ ଖେପା କରୁଛୁ। ତୋର ଶିଙ୍ଗ ଭାଙ୍ଗିଯାଉ। ସଙ୍ଗେସଙ୍ଗେ ଗାଈର ଶିଙ୍ଗ ଭାଙ୍ଗିଗଲା।

ଗାଈ ଭଙ୍ଗା ଶିଙ୍ଗ ନେଇ ସେଠାରୁ ଚାଲିଯାଉଥିବାବେଳେ ବାଟରେ ତାକୁ କାଉ ଦେଖିଲା।

କାଉ କହିଲା: କିହୋ, ଗାଈ ନାନୀ, ତମ ସିଙ୍ଗ ଭାଙ୍ଗିଲା କିପରି? ତମ ଶିଙ୍ଗରୁ ଯେ ରକ୍ତ ବାହାରୁଛି।

କାଉର ଏପରି ପାଣିପୂରା କଥାରେ ଗାଈ ମଧ୍ୟ ରାଗିଗଲା। ସେ କଙ୍କଡ଼ାଠାରୁ ପାଇଥିବା ଅଭିଶାପକୁ କାଉ ଉପରେ ସୁଝାଇବାକୁ ଯାଇ କହିଲା: ରେ, କାଉ ତୋର ଡେଣା ଛିଣ୍ଡି ପଡୁ। ତୁ ଆଉ ଉଡି ନପାର।

କାଉର ସଙ୍ଗେ ସଙ୍ଗେ ଡେଣା ଦୁଇଟି ଛିଣ୍ଡି ପଡିଲା। ସେ ଡେଣା ଖଣ୍ଡି ଅବସ୍ଥାରେ ବର ଗଛରେ ବସି ରହିଲା। ଏହା ଦେଖି ବରଗଛ କାଉକୁ କହିଲା: କିହୋ, କାଉ ମହାଶୟ, ତମର ଡେଣା କିମିତି କଟିଲା କି?

ବରଗଛର ଏମିତି ଟାପରା କଥାରେ କାଉ ରାଗିଗଲା। ସେ ବରଗଛକୁ କହିଲା: ରେ, ବରଗଛ ତୋର ସବୁ ପତ୍ର ଝଡିଯାଉ, ତୁ ଲଣ୍ଡା ହୋଇଯା। ଏହି ସମୟରେ କେଉଁଠୁ ଏକ କାପୁ ଚଢେଇ ଉଡିଆସି ବରଗଛରେ ବସି ବରଗଛକୁ କହିଲା: କିହୋ, ବରଗଛ ତମେ କ'ଣ ଲଣ୍ଡା ହୋଇ ଯାଇଛ? ତମର ପତ୍ରସବୁ ଗଲେ କୁଆଡେ।

ବରଗଛ କାପୁ ଚଢେଇ ଉପରେ ରାଗିଯାଇ ତାକୁ କହିଲା: ତତେ ସବୁବେଳେ ନିଦ ମାଡୁ, ସବୁବେଳେ ଢୁଳାଉଥା। ବରଗଛର କଥାରେ କାପୁ ଚଢେଇକୁ ପ୍ରବଳ ନିଦ ମାଡି ଆସିଲା। କାପୁ ଚଢେଇ ନିରୋଳା ରାସ୍ତା ଉପରେ ବସି ଢୁଳାଉଥାଏ।

ଏହି ସମୟରେ ସେଇ ବାଟ ଦେଇ ଗୋଟିଏ ମୟୂର ଯାଉଥିଲା। କାପୁ ଚଢେଇ ଢୁଳାଉଥିବାର ଦେଖି ମୟୂର କହିଲା: କିହୋ, କାପୁ ଭାଇ, ତମେ ଏଠି କ'ଣ ବସି ଢୁଳାଉଛ। କ'ଣ କାଲି ରାତିରେ ଅନିଦ୍ରା ଥିଲ ନା ମାଛ ଧରୁଥିଲ।

ମୟୂରର ଏପରି ମରମ ଛଡା କଥାରେ କାପୁ ଚଢେଇ ରାଗିଯାଇ ମୟୂରକୁ କହିଲା: ତୁ ଏବେଠାରୁ ଆଉ ଆଗକୁ ଆଗକୁ ନ ଚାଲି କେବଳ ପଛୁଆ ଚାଲିବୁ। କାପୁ ଚଢେଇର କଥା ନ ସରୁଣୁ ମୟୂର ପଛେଇ ପଛେଇ ଚାଲିବାକୁ ଲାଗିଲା। ଏମିତି ପଛେଇ ପଛେଇ ଚାଲୁ ଚାଲୁ ମୟୂର ଯାଇ ନଦୀ ଭିତରକୁ ପଶିଗଲା।

ନଦୀ ମୟୂରର ଏପରି ଦୟନୀୟ ଅବସ୍ଥା ଦେଖି କହିଲା: କିହୋ, ମୟୂର ତମର ଏମିତି ଅବସ୍ଥା କେମିତି ହେଲା। ତମେ ପଛେଇ ପଛେଇ କ'ଣ ଚାଲୁଛ? ନା ଏମିତି ଚାଲିବାକୁ

ତମକୁ କିଏ କହିଛିକି? ନଦୀର ଏହି କଥାରେ ମୟୂର ରାଗିଗଲା । ସେ ନଦୀକୁ କହିଲା: ରେ, ନଦୀ ତୁ ଶୁଖିଯା । ସଙ୍ଗେସଙ୍ଗେ ନଦୀରୁ ପାଣି ଶୁଖିଗଲା । ସେଠାରେ ୭ ଜଣ ହଳିଆ ହଳ କରୁଥିଲେ । ସେମାନଙ୍କୁ ଶୋଷ ଲାଗିବାରୁ ନଦୀକୁ ପାଣି ପିଇବାକୁ ଆସି ଦେଖିଲେ, ନଦୀ ଶୁଖିଯାଇଛି ।

ହଳିଆମାନେ ନଦୀକୁ କହିଲେ: ନଦୀ, ତମେ ଏତେ ଶୀଘ୍ର କେମିତି ଶୁଖିଗଲ । ତମର ପାଣି ଗଲା କୁଆଡେ । ନଦୀର ମନ ଦୁଃଖ ହେଲା । ସେ ହଳିଆମାନଙ୍କ ଉପରକୁ ରାଗିଯାଇ କହିଲା: ହଳିଆମାନେ ତମେମାନେ ଏବେଠାରୁ ହଳ ଛାଡି ଢେମସା ନାଚ । ନଦୀ ପାଟିରୁ କଥା ନ ସରୁଣୁ ସାତ ଜଣ ହଳିଆ ବିଲରେ ଢେମସା ନାଚିବାକୁ ଲାଗିଲେ । ଦିନ ତମାମ୍ ଢେମସା ନାଚିନାଚି ଆଉ ଘରକୁ ଫେରିଲେ ନାହିଁ ।

ଘରକୁ ନ ଫେରିବା ଦେଖି ସେମାନଙ୍କ ବୁଢା ବାପ ବିଲକୁ ଆସି ଦେଖିଲା ପୁଅମାନେ ଢେମସା ନାଚୁଛନ୍ତି । ପୁଅମାନଙ୍କୁ ଏପରି କାହିଁକି ନାଚୁଛନ୍ତି ବୋଲି ବୁଢା ପଚାରିବାରୁ ପୁଅମାନେ ବୁଢାକୁ କହିଲେ: ତମେ ବି ବାପା ଘରୁ ବିଲକୁ ବିଲରୁ ଘରକୁ ଯିବା ଆସିବା କରୁଥାଅ । ପୁଅମାନଙ୍କ କଥାରେ ବୁଢା ବାପା ତାର ଏମିତି ଘରୁ ବିଲକୁ, ବିଲରୁ ଘରକୁ ଯିବା ଆସିବା କଲା ।

ଏହା ଦେଖି ଘରେ ବୋହୂମାନେ ଶ୍ୱଶୁରଙ୍କୁ ଏହାର କାରଣ ପଚାରିଲେ । ବାପାଙ୍କର କ'ଣ ହୋଇଛି ବୋଲି ବୋହୂମାନେ ପଚାରିବାରୁ ବୁଢା ବିରକ୍ତ ହୋଇ ବୋହୂମାନଙ୍କୁ କହିଲା: ତମେମାନେ ଘରେ ଖାଲି ଏପଟ ସେପଟ ଧାଁଧପଡ଼ କରୁଥାଅ । ବୋହୂମାନେ ଶ୍ୱଶୂରର ଏହି କଥା ଶୁଣି ଘରେ ଏପଟ ସେପଟ ଧାଁ ଧପଡ କରିବାରେ ଲାଗିଲେ । ଏହି ସମୟରେ ଜଣେ ଭିକାରୀ ଘରକୁ ଭିକ୍ଷା ମାଗିବାକୁ ଆସିଥିଲା । ସେ ଦେଖିଲା ବୋହୂମାନେ ଘର ଭିତରେ ଏପଟ ସେପଟ ଧାଉଁଛନ୍ତି ।

ଭିକାରୀଟି ବୋହୂମାନଙ୍କୁ ଏମିତି କାହିଁକି ହେଉଛନ୍ତି ବୋଲି ପଚାରିବାରୁ ବୋହୂମାନେ ରାଗିଯାଇ ଭିକାରୀକୁ କହିଲେ: ରେ ଭିକାରୀ, ତୁ ଯାଇ ଜଙ୍ଗଲରେ ମରିଯା । ଭିକାରୀଟି ଯାଇ ଜଙ୍ଗଲରେ ମରିଗଲା । ମୋ ଗପ ସରିଗଲା ।





# ଡ଼ୁଙ୍ଗରଦେବୀ ଓ ବାଘୁଣୀ କାହାଣୀ

(କୋରାପୁଟ, ପରଜା ଲୋକ କଥା)

ଗୋଟିଏ ଗାଁରେ ବୁଢା ବୁଢୀ ଦୁଇ ପ୍ରାଣୀ ରହୁଥିଲେ। ବହୁ ଦିନ ଧରି ସେମାନଙ୍କର ପୁଅ ଝିଅ ହେଉନଥିଲା। ଲୋକେ ତାଙ୍କୁ ବାଞ୍ଝ ବୋଲି ଘୃଣା କରୁଥିଲେ। ତେବେ ବୁଢା ବୁଢୀ ଭାରି ଲୋଭି ଥିଲେ। ସେମାନେ ଜଙ୍ଗଲରୁ କାଠ କାଟି ଚଳୁଥିଲେ।

ଦିନେ ବୁଢା ବୁଢି ଜଙ୍ଗଲକୁ ଯାଇଥିବାବେଳେ ହଠାତ୍ ବୁଢୀର ଗର୍ଭ ଯନ୍ତ୍ରଣା ଆରମ୍ଭ ହେଲା। ସେମାନେ ଜଙ୍ଗଲରେ କାଠ କାଟୁଥାନ୍ତି। ବୁଢୀର ଗର୍ଭ ଯନ୍ତ୍ରଣା ବେଳୁବେଳ ବଢିଲା।

ପିଲା ଜନ୍ମ ହେବା ସମୟ ନିକଟତର ହୋଇଯିବାରୁ ନାଭ କାଟିବା ପାଇଁ କତୁରୀ ଆଣିବାକୁ ବୁଢୀ ବୁଢାକୁ ଘରକୁ ପଠାଇଲା। ବୁଢା ବୁଢିକୁ ଏପରି ଅବସ୍ଥାରେ ଛାଡି ଘରକୁ କତୁରୀ ଆଣିବାକୁ ଗଲା।

ବୁଢା ଘରକୁ ଆସି ଦେଖିଲା ବେଳକୁ ତାର ଘର ଧନଧାନ୍ୟରେ ପୂରଣ ହୋଇଯାଇଛି। ଘର ସାରା ସୁନା, ରୂପା, ହୀରା, ମୋତି ଅଳଙ୍କାରରେ ଭର୍ତ୍ତି ହୋଇଯାଇଛି। ବୁଢା ଏହା ଦେଖି ବାୟା ହୋଇଗଲା।

ହଠାତ୍ ବୁଢାକୁ ସ୍ୱପ୍ନାଦେଶ ହେଲା: ତମର ପୁଅ ଦରକାର ନା ଧନ ଦରକାର? ବୁଢା ତ ଲୋଭୀ ଥିଲା। ସେ କହିଲା: ମୋର ଧନ ଦରକାର। ତେଣୁ ସେ ସଙ୍ଗେସଙ୍ଗେ ବଣକୁ ଧାଇଁ ଯାଇ ବୁଢ; ବୁଢୀକୁ ଏସବୁ କଥା କହିଲା। ବୁଢୀ ମଧ୍ୟ ଧନ ଲୋଭରେ ଅନ୍ଧ ହୋଇଗଲା।

ଧନ ଲୋଭରେ ବୁଢାବୁଢି ଦୁହେଁ ପୁଅକୁ ଜଙ୍ଗଲରେ ଛାଡି ଦେଇ ଆସିଲେ। ପୁଅଟି ଗଛମୂଳେ ଶୋଇ ରହିଥାଏ। ଏହି ସମୟରେ ସେଠାରେ ଡଙ୍ଗର ଦେବୀ ଓହ୍ଲାଇଲେ ଏବଂ ସେଠାରେ ଥିବା ଏକ ବାଘୁଣୀକୁ ଏହି ପୁଅଟିକୁ ପାଳିବାକୁ ନିର୍ଦ୍ଦେଶ ଦେଲେ।

ଡଙ୍ଗର ଦେବୀଙ୍କ ନିର୍ଦ୍ଦେଶ ଅନୁଯାୟୀ, ବାଘୁଣୀ ଏହି ପିଲାଟିକୁ ପାଳିଲା। ପିଲାଟି ଧୀରେଧୀରେ ବଡ଼ ହେଲା। ବାଘୁଣୀ ପିଲାଟିକୁ ଅତି ଯତନରେ ପାଳିଥିଲା। ପିଲାଟି ପାଇଁ ପୋଷାକ ଦରକାର ହେବାରୁ ବାଘୁଣୀ ନିକଟସ୍ଥ ହାଟ ବଜାର ଉପରେ ଚଢଉ କରି ବହୁ ପୋଷାକ ଓ ଖାଦ୍ୟପେୟ ଆଣି ଦେଉଥିଲା। ପିଲାଟି ବାଘୁଣୀ ମା ପାଖରେ ଅତି ଗେଲବସରରେ ବଢିଲା।

ବଡ଼ ହେବାରୁ ଦିନେ ପିଲାଟି ଡଙ୍ଗର ଦେବୀଙ୍କୁ ପ୍ରାର୍ଥନା କଲା। ଡଙ୍ଗର ଦେବୀ ପିଲାଟିର ପ୍ରାର୍ଥନା ଶୁଣି ଓହ୍ଲାଇ ଆସିଲେ। ପିଲାଟି ଡଙ୍ଗର ଦେବୀଙ୍କୁ କହିଲା: ମା ମୋର ଗାଁ ଆଡେ ଟିକେ ଯିବାକୁ ଇଚ୍ଛା ହେଉଛି। ମଣିଷମାନେ କେମିତି ରହୁଛନ୍ତି, ମୁଁ ମଧ୍ୟ ସେମାନଙ୍କ ସାଙ୍ଗରେ କିଛି ଦିନ ରହିବାକୁ ଚାହୁଁଛି।

ଡଙ୍ଗର ଦେବୀ ପିଲାଟିର ଏପରି କଥା ଶୁଣି ତାକୁ ଗାଁକୁ ଯିବାକୁ ସମ୍ମତ ଦେଲେ। ଯୁବକଟି ଗାଁକୁ ବାହାରିଲା। ଯାଉ ଯାଉ ବାଟରେ ଏକ ମାଙ୍କଡ଼ ଦେଖା ହେଲା। ମାଙ୍କଡ଼ ଯୁବକଟିକୁ ଦେଖି କୁଆଡେ ଯାଉଛି ବୋଲି ପଚାରିଲା।

ଯୁବକଟି କହିଲା: ମୁଁ ଗାଁକୁ ଯାଉଛି, ସେଠାରେ ବାହା ହେବି।

ମାଙ୍କଡ଼ କହିଲା: ହେ, ଯୁବକ ଭାଇ ମୁଁ ମଧ୍ୟ ତୁମ ସାଙ୍ଗରେ ଗାଁକୁ ଯିବି ଓ ବିଭା ହେବି।

ଯୁବକଟି କହିଲା: ତମେ ତ ମାଙ୍କଡ଼, ତମକୁ କିଏ ବାହା ହେବ?

ମାଙ୍କଡ଼ କହିଲା: ମୁଁ ମଣିଷ ରୂପ ଧାରଣ କରି ତୁମ ସାଥୀରେ ଯିବି।

ସେଉଟୁ, ଯୁବକଟି ସହ ମାଙ୍କଡ଼ ମଧ୍ୟ ଗାଁକୁ ଗଲା। ଦୁହେଁ ଯାଇ ଗାଁରେ ଦୁଇ ଜଣ ଯୁବତୀଙ୍କୁ ବିଭା ହୋଇ ରହିଲେ। ମାଙ୍କଡ଼ଟି କିନ୍ତୁ ସବୁବେଳେ ଯୁବକଟିର ମନ୍ଦ ପାଉଥିଲା। ତାକୁ କେମିତି ଖାଲରେ ପକେଇବ ଚିନ୍ତା କରୁଥିଲା।

ଯୁବକଟି ଯେଉଁ ଝିଅକୁ ବାହା ହୋଇ ଶ୍ୱଶୁର ଘରେ ରହୁଥିଲା, ସେ ସେଠାରେ ଚାଷବାସ

କରୁଥିଲା । ଯୁବକଟିର କ୍ଷେତରେ ଭଲ ଫସଲ ହେଉଥିଲା । ମାଙ୍କଡ଼ ସବୁଦିନେ ରାତିରେ ଯାଇ ଯୁବକଟି କରିଥିବା ଫସଲକୁ ଖାଇ ଯାଉଥିଲା । ଫଳରେ ଯୁବକଟିର ଶ୍ୱଶୁର ଘର ଲୋକେ କ୍ୱାଇଁ ଉପରକୁ ଚିଡୁଥିଲେ। କାହିଁକି ଫସଲ ହେଉନାହିଁ ବୋଲି କ୍ୱାଇଁ ଉପରେ ରାଗୁଥିଲେ।

ଫସଲ କାହିଁକି ହେଉନାହିଁ କିମ୍ବା କିଏ ଖାଇ ଯାଉଛି ଚିନ୍ତା କରିକରି ଦିନେ ଯୁବକଟିର ମାଙ୍କଡ଼ ଉପରେ ସନ୍ଦେହ ହେଲା । ମାଙ୍କଡ଼ ଫସଲ ଖାଇ ଯାଉଛି ବୋଲି ଯୁବକଟି ଦିନେ ରାତିରେ ଧନୁ ତୀର ଧରି ଜଗି ବସିଲା । ସତକୁ ସତ ମାଙ୍କଡ଼ ତାର ଫସଲ ଖାଇବାକୁ ଆସିଲା । ଯୁବକଟି ମାଙ୍କଡ଼କୁ ଦେଖି ପ୍ରବଳ ରାଗିଗଲା । ରାଗି ନିର୍ଆଁବାଣ ହୋଇଗଲା । ସେ ସଙ୍ଗେସଙ୍ଗେ ମାଙ୍କଡ଼ଟିକୁ ଧନୁ ତୀରରେ ମାରିଦେଲା ।

ମାଙ୍କଡ଼ଟି ମରିଯିବାରୁ ସେଠାରେ ବିପଦ ଥିବା ଲକ୍ଷ୍ୟ କରି ଯୁବକଟି ତାର ସ୍ତ୍ରୀ ସହିତ ପୁଣି ଜଙ୍ଗଲକୁ ଫେରିଯିବାକୁ କହିଲା । ମାଙ୍କଡ଼ଟି ମରିଯିବା ପରେପରେ ତାର ଶ୍ୱଶୁର ଘର ଲୋକେ ଉକ୍ତ ଯୁବକଟିକୁ ସନ୍ଦେହ କଲେ। ତେଣୁ ସେହି ରାତି ରାତି ଯୁବକଟି ତାର ସ୍ତ୍ରୀକୁ ଧରି ଜଙ୍ଗଲକୁ ଚାଲିଗଲେ।

ବାଟରେ ଯାଉଥିବାବେଳେ ଯୁବକଟି ତାର ସ୍ତ୍ରୀକୁ ସବୁ ବୁଝାଇ ଦେଲା । ତାର ମା ବାଘୁଣୀ ବୋଲି ଯୁବକଟି ତାର ସ୍ତ୍ରୀକୁ କହିଲା । ସେମାନଙ୍କର ଡଙ୍ଗରଦେବୀଙ୍କ ସମ୍ପର୍କରେ କହିଲା । ଯୁବକ ଓ ତାର ସ୍ତ୍ରୀ ରାତି ରାତି ଚାଲୁଥାନ୍ତି। ସକାଳକୁ ଯାଇ ଜଙ୍ଗଲରେ ପହଞ୍ଚିଲେ।

ବାଘୁଣୀ ପୁଅ ବୋହୂଙ୍କୁ ଦେଖି ବହୁତ ଖୁସି ହେଲା । ଡଙ୍ଗର ଦେବୀ ମଧ୍ୟ ବହୁତ ଖୁସି ହେଲେ। ବାଘୁଣୀ ପୁଅ ବୋହୂଙ୍କ ପାଇଁ ନୂଆ ଘର ତୋଳି ଦେଲେ। ସେମାନେ ଦୁହେଁ ବେଶ୍ ଆରାମରେ ଜଙ୍ଗଲରେ ରହିଲେ। ସେମାନଙ୍କର ପୁଅ, ଝିଅ ହେଲା । ସେମାନେ ବଡ଼ ହୋଇ ବିଭା ହୋଇ ଘର ସଂସାର ବଢାଇଲେ। କ୍ରମେ ଜଙ୍ଗଲରେ ଗାଁମାନ ସୃଷ୍ଟି ହୋଇ ମଣିଷମାନେ ବସବାସ କଲେ। ଏମାନେ କନ୍ଧ ପରଜା ଭାବେ ଜଙ୍ଗଲରେ ଚଳିଲେ। ବଣ ରାଇଜର ପଶୁପକ୍ଷୀ ସେମାନଙ୍କର ସାଙ୍ଗସାଥୀ ହୋଇ ରହିଲେ। ଡଙ୍ଗରଦେବୀ ସେମାନଙ୍କର ସାହା ଭରସା ହେଲେ।





# ଚୁଟିଆମୂଷା

(ନବରଙ୍ଗପୁର, ପରଜା ଲୋକ କଥା)

ଗୋଟିଏ ଗାଁରେ ବୁଡା, ବୁଢି ଦୁହେଁ ରହୁଥିଲେ। ସେମାନେ ଅପୁତ୍ରିକ ଥିଲେ। ପିଲାଟିଏ ପାଇଁ ସେମାନେ ଡଙ୍ଗରଦେବୀଙ୍କୁ ଡାକୁଥିଲେ। ଦୀର୍ଘ ଦିନ ଧରି ବୁଡାବୁଢି ଡଙ୍ଗର ଦେବୀଙ୍କୁ ପ୍ରାର୍ଥନା କରି ଆସୁଥିଲେ। ଶେଷରେ ଡଙ୍ଗରଦେବୀ ବୁଡାବୁଢିଙ୍କ ଡାକ ଶୁଣିଲେ ଏବଂ ତାଙ୍କ ଉପରେ ପ୍ରସନ୍ନ ହେଲେ।

ବୁଡା ବୁଢୀ ଡଙ୍ଗରଦେବୀଙ୍କୁ ପିଲାଟିଏ ମାଗିଲେ। ଡଙ୍ଗରଦେବୀ ବୁଢିକୁ କହିଲେ: ତମ ଗର୍ଭରୁ ପିଲାଟିଏ ନ ଜନ୍ମିଲେ ମଧ୍ୟ ମୁଁ ତୁମକୁ ଯାହା ଦେବି ତମେ ଦୁହେଁ ତାକୁ ଖୁସିର ସହ ଗ୍ରହଣ କରିବ।

ଡଙ୍ଗରଦେବୀ ବୁଢାବୁଢୀଙ୍କୁ ଜଙ୍ଗଲର ଏକ ନିର୍ଦ୍ଦିଷ୍ଟ ଜାଗାକୁ ଯାଇ ସେଠାରେ ଖୋଳିବାକୁ କହିଲେ ଏବଂ ସେଠୁ ଯାହା ମିଳିବ ତାକୁ ଦୁହେଁ ନିଜର ପିଲା ଭଳି ପାଳନ କରିବାକୁ କହିଲେ।

ବୁଢା, ବୁଢୀ ଡଙ୍ଗରଦେବୀଙ୍କ କଥା ଅନୁସାରେ ଜଙ୍ଗଲର ସେହି ସ୍ଥାନକୁ ଯାଇ ଖୋଳିବାକୁ ଲାଗିଲେ। ବୁଢା, ବୁଢି ଖୋଳିଖୋଳି ନୟାନ୍ତ ହୋଇଗଲେ ସିନା କିଛି ହେଲେ ମାଟି ଭିତରୁ ପାଇଲେ ନାହିଁ। ବୁଢୀ ବୋଧେ ଭାବିଲା ଡଙ୍ଗରଦେବୀ ତାଙ୍କୁ ଠକି ଦେଇଛନ୍ତି। ସେ ମନେମନେ ଡଙ୍ଗରଦେବୀଙ୍କ ଉପରକୁ ଅସନ୍ତୋଷ ପ୍ରକାଶ କଲାବେଳେ ଏହି ସମୟରେ ମାଟି ଭିତରୁ ଏକ ଚୁଟିଆ ମୂଷା ଛୁଆଟିଏ ମିଳିଲା। ବୁଢୀ ତାକୁ ମାରିଦେବାକୁ ବୁଢାକୁ କହିଲା।

ବୁଢା ଡଙ୍ଗରଦେବୀଙ୍କ କଥା ମନ ପକେଇ କହିଲା: ବୋଧେ ଦେବୀ ଏହି ମୂଷାଟିକୁ ଆମକୁ ଦେଇଛନ୍ତି। ତେଣୁ ତାକୁ ନମାରି ବୁଢାବୁଢୀ ଦୁହେଁ ମୂଷା ଛୁଆଟିକୁ ନେଇ ଘରକୁ ଗଲେ। ବୁଢୀ ପ୍ରଥମେ ପ୍ରଥମେ ମୂଷା ଛୁଆଟିକୁ ଦେଖି ନାକ ଟେକୁଥିଲା।

ଡଙ୍ଗରଦେବୀ ସ୍ୱପ୍ନାଦେଶ କଲେ ଏବଂ କହିଲେ: ଏହି ମୂଷା ଛୁଆଟି ସେମାନଙ୍କୁ ନିଜ ବାପା, ମା ଭଳି ସମ୍ମାନ କରିବ ଏବଂ ତାକୁ ନିଜ ଝିଅ ଭଳି ପାଳିବାକୁ ଦେବୀ କହି ଅନ୍ତର୍ଦ୍ଧାନ ହୋଇଗଲେ।

ମୂଷା ଛୁଆଟି ଧୀରେଧୀରେ ବଢି ବଡ଼ ହେଲା। ମୂଷା ଛୁଆଟି ବାପା, ମାଙ୍କର ସେବା କରୁଥିଲା। ନିଜ ଝିଅଠାରୁ ମୂଷାଟି ତାର ବୁଢା ବାପା, ମାଙ୍କୁ ଯତ୍ନ ନେଉଥିଲା। ବୁଢାବୁଢୀ ଝିଅର ବାହାଘର ପାଇଁ ଯୋଜନା କଲେ। ଝିଅ ପାଇଁ ବର ଖୋଜିଲେ। ବର କେଉଁଠୁ ମିଳିବ। ମୂଷାକୁ ବାହା ହେବ କିଏ। ବୁଢା ବର ଖୋଜିଖୋଜି ଗୋଟିଏ ଗାଁରେ ପହଞ୍ଚିଲା।

ସେହି ଗାଁରେ ଗୋଟିଏ ପଙ୍ଗୁ ପିଲାଟିଏ ଥାଏ। ବୁଢା ନିଜର ଝିଅକୁ ମୂଷା ବୋଲି ପରିଚୟ ନ ଦେଇ ମଣିଷ ବୋଲି କହୁଥିଲା। ସେ ଗାଁରେ ପହଞ୍ଚି ତାର ଝିଅ ପାଇଁ ପ୍ରସ୍ତାବ ଦେବାରୁ ଗାଁ ଲୋକେ ମଧ୍ୟ ବୁଢାକୁ ଠକିବାକୁ ଚେଷ୍ଟା କରି ସେହି ପଙ୍ଗୁ ପିଲାଟିକୁ ବୁଢାର ଝିଅକୁ ବାହା କରିବା ପାଇଁ କହିଲେ। ବୁଢା ମଧ୍ୟ ଏହି ପ୍ରସ୍ତାବରେ ରାଜି ହୋଇଗଲା। ତାପରେ ବୁଢା ପଙ୍ଗୁକୁ ଘରଜ୍ୱାଇଁଆ କରି ନେଇଗଲା। ପୁଅ ଘର ଲୋକେ ମଧ୍ୟ ଝିଅକୁ ନ ଦେଖି ବାହାଘର କରିଦେଲେ।

ବୁଢା ପଙ୍ଗୁ ବରକୁ ନିଜର ଜ୍ୱାଇଁ କରି ନେଇଗଲା। ଜ୍ୱାଇଁ ଯେତେବେଳେ ଘରେ ପହଞ୍ଚି ଦେଖିଲା, ବୁଢାର ଝିଅଫିଅ କେହି ନାହାନ୍ତି, ମୂଷାଟିକୁ ବୁଢା ତାର ଝିଅ ଭଳି ପାଳିଛି। ବୁଢାର କିନ୍ତୁ ବହୁତ ଧନ ଥିଲା। ଧନ ଲୋଭରେ ପଙ୍ଗୁ ବୁଢା ଘରେ ଘର ଜ୍ୱାଇଁଆ ଭାବେ ରହିଲା।

ବୁଢା କିନ୍ତୁ ନିଜର ଜ୍ୱାଇଁକୁ କହିଲା: ଡଙ୍ଗରଦେବୀ କହିଛନ୍ତି ଏହି ମୂଷା ଦିନେ ସୁନ୍ଦରୀ ନାରୀଟିଏ ହେବ। ସେଦିନ ଆସିଲେ ଏହି ମୂଷା ମଣିଷ ହେବ। ତେବେ ସେଦିନକୁ ଅପେକ୍ଷା କରିବାକୁ ପଡିବ। ବୁଢାର ଏହି କଥା ଶୁଣି ପଙ୍ଗୁ ତାର ମୂଷା ସ୍ତ୍ରୀ ପାଖରେ ବେଶ୍ କିଛି ଦିନ ଶ୍ୱଶୁର ଘରେ ରହିଲା।



# ପିଲାଙ୍କ କାହାଣୀ

(ନବରଙ୍ଗପୁର, ଭତରା ଲୋକ କଥା)

କିଛି ପିଲା ଡଙ୍ଗରରେ ଖେଳୁଥିଲେ। ଖେଳୁଖେଳୁ ପିଲାମାନଙ୍କର ଜାମୁ କୋଳି ଖାଇବାକୁ ଇଚ୍ଛା ହେଲା।

ସେମାନଙ୍କ ମଧ୍ୟରୁ କିଛି ପିଲା କହିଲେ: ଚାଲ ଜଙ୍ଗଲକୁ ଜାମୁ କୋଳି ଖାଇବାକୁ ଯିବା।

ଜଣେ ପିଲା କହିଲା: ମୁଁ ଜଙ୍ଗଲରୁ ଜାମୁ କୋଳି ଖାଇ ଆସିଲିଣି। ଆଉ ଯିବିନି।

ଆଉ ଜଣେ ପିଲା କହିଲା: ତୁ ଯଦି ଜଙ୍ଗଲକୁ ଯାଇ ଜାମୁ କୋଳି ଖାଇ ଆସିଛୁ, ତେବେ ତୋ ପାଟି ଦେଖା ନି। ତୋ ଜିଭତ ନିଶ୍ଚୟ ନାଲି ହୋଇଥିବ।

ପିଲାଟି କହିଲା: ମୁଁ ବାଉଁଶ ଛେଲାରେ ଜିଭ ଘସି ଦେଇଛି।

ଅନ୍ୟ ପିଲାଟି କହିଲା: ତେବେ ସେ ବାଉଁଶ ଛେଲା ଦେଖା।

ପିଲାଟି କହିଲା: ବାଉଁଶ ଛେଲାକୁ ଉଇ ଖାଇଗଲେଣି।

ଅନ୍ୟ ପିଲାଟି କହିଲା: କେଉଁଠି ଉଇ ହୁଙ୍କା ହୋଇଛି ଦେଖା।

ପିଲାଟି କହିଲା: ଉଇ ହୁଙ୍କାରୁ କୁମ୍ଭାର ମାଟି ନେଇ ମାଠିଆ ଗଢିଲାଣି।

ଅନ୍ୟ ପିଲାଟି କହିଲା: କାହିଁ, କୁମ୍ଭାର ଗଢିଥିବା ସେ ମାଠିଆ ଦେଖା।

ପିଲାଟି କହିଲା: ପିଲାମାନେ ସେ ମାଠିଆକୁ ଟେକା ମାରି ଫଟେଇ ଦେଲେଣି।

ଅନ୍ୟ ପିଲାମାନେ କହିଲେ: କାହିଁକି ପିଲାମାନେ ମାଠିଆ ଫଟେଇ ଦେଲେ।

ପିଲାଟି କହିଲା: ସେମାନଙ୍କ ମା ମାନେ ପିଲାମାନଙ୍କୁ କ୍ଷୀରଭାତ ଦେଲେନି ବୋଲି ପିଲାମାନେ ରାଗିକି ମାଠିଆ ଫଟେଇ ଦେଲେ।

ଅନ୍ୟ ପିଲାମାନେ କହିଲେ: କାହିଁକି ମା ପିଲାକୁ କ୍ଷୀରଭାତ ଦେଲେନି।

ପିଲାଟି କହିଲା: ଗାଈ ଦୁଧ ଦେଲାନି।

ଅନ୍ୟ ପିଲାମାନେ କହିଲେ: କାହିଁକି ଗାଈ ଦୁଧ ଦେଲାନି।

ପିଲାଟି କହିଲା: ଘାସ କଅଁଳିଲା ନାହିଁ।

ଅନ୍ୟ ପିଲାମାନେ କାହିଲେ: କାହିଁକି ଘାସ କଅଁଳିଲା ନାହିଁ।

ପିଲାଟି କହିଲା: ବର୍ଷା ହେଲାନାହିଁ।

ଅନ୍ୟ ପିଲାମାନେ କହିଲେ: କାହିଁକି ବର୍ଷା ହେଲା ନାହିଁ।

ପିଲାଟି କହିଲା: ବେଙ୍ଗମାନେ ବୋବେଇଲେ ନାହିଁ କି ବର୍ଷା ହେଲାନାହିଁ।

ଅନ୍ୟ ପିଲାମାନେ କହିଲେ: କାହିଁକି ବେଙ୍ଗମାନେ ବୋବେଇଲେ ନାହିଁ।

ପିଲାଟି କହିଲା: ବେଙ୍ଗମାନେ ବୋବେଇଲେ ବାଳୁଙ୍ଗା ପିଲାମାନେ ତାଙ୍କ ଉପରକୁ ଟେକା ପଥର ଫିଙ୍ଗୁଛନ୍ତି। ତେଣୁ ବେଙ୍ଗମାନେ ବୋବେଇଲେ ନାହିଁ।

ଅନ୍ୟ ପିଲାମାନେ କହିଲେ: କାହିଁକି ପିଲାମାନେ ବେଙ୍ଗ ଉପରକୁ ଟେକା ପଥର ଫିଙ୍ଗୁଛନ୍ତି।

ପିଲାଟି କହିଲା: ବୁଢା ଅଜା ଗପ କହୁ ନାହାନ୍ତି।

ଅନ୍ୟ ପିଲାମାନେ କହିଲେ: କାହିଁକି ବୁଢା ଅଜା ପିଲାମାନଙ୍କୁ ଗପ କହୁ ନାହାନ୍ତି।

ପିଲାଟି କହିଲା: ପିଲାମାନେ ବୁଢା ଅଜାକୁ ନିଆଁ ପିଙ୍କା ଦେଉ ନାହାନ୍ତି।





# ରାତିରେ ରାଣୀ, ଦିନରେ ଭାଲୁ

(କୋରାପୁଟ କନ୍ଧ ଲୋକ କଥା)

ଗୋଟିଏ ଗାଁରେ ବୁଢାବୁଢି ଦୁହେଁ ଥିଲେ। ଦି ପ୍ରାଣୀ ବେଶ୍ ହସଖୁସିରେ ବଞ୍ଚୁଥିଲେ। ସେମାନଙ୍କର ପିଲାଛୁଆ ହେଉ ନଥିବାରୁ ଭାରି ମନ ଦୁଃଖ ଥାଏ। ଗାଁ ଲୋକ ବାରକଥା କହୁଥାନ୍ତି। ଛୁଆଟିଏ ପାଇଁ ନାନା ଦେବାଦେବୀ ପୂଜୁଥାନ୍ତି।

ଦିନେ କ'ଣ ହୋଇଛି ନା, ବୁଢି ଗୋଟିଏ ଭାଲୁ ଛୁଆ ଜନ୍ମ କଲା।

ଗାଁ ଲୋକେ ଏହା ଦେଖି ନାକ ଟେକିଲେ। କିନ୍ତୁ ବୁଢା, ବୁଢି ଭାଗ୍ୟକୁ ଆଦରି ଭାଲୁ ଛୁଆଟିକୁ ନିଜ ପିଲା ଭାବି ଯତ୍ନରେ ପାଳିଲେ। ଏମିତି କିଛି ଦିନ ଗଲା ଭାଲୁ ଛୁଆଟି ବଢିବାକୁ ଲାଗିଲା।

କିନ୍ତୁ ଭଗବାନଙ୍କ ଲୀଳା ତ ଅପାର। ଦିନେ ବୁଢାବୁଢି ଗୋଟିଏ କଥା ଲକ୍ଷ୍ୟ କଲେ। ଏହି ଭାଲୁଟି ଦିନରେ ଭାଲୁ ହୋଇ ବୁଲାବୁଲି କରୁଥିବାବେଳେ ରାତିରେ ମଣିଷ କନ୍ୟା ପାଲଟି ଯାଉଥିଲା। ବୁଢାବୁଢି ଏହି ଭାଲୁଟିକୁ ବହୁତ ସ୍ନେହ କରୁଥିଲେ।

ଯୁବରାଜ ଓ ଯୁବରାଣୀ ଏହି ଧନୀ ଯୁବକଙ୍କ ସମ୍ପର୍କରେ ଗାଁ ଲୋକଙ୍କଠାରୁ ପଚାରି ବୁଝିଲେ। ସେମାନେ ଯାଇ ସେହି ଧନୀ ଯୁବକ ନିକଟରେ ପହଞ୍ଚିଲେ। ଧନୀ ଯୁବକଟି ଏତେ ସୁନ୍ଦରୀ ସ୍ତ୍ରୀଲୋକଟିକୁ ଦେଖି ତାକୁ ପାଇବାକୁ ତାର ଲୋଭ ବଳିଲା। ତେଣୁ କିପରି ଏହି ସୁନ୍ଦରୀ ସ୍ତ୍ରୀକୁ ପାଇବ ସେଥିନେଇ ଯୋଜନା କଲା।

ଧନୀ ଯୁବକଟି ଏହି ନବ ଦମ୍ପତ୍ତିଙ୍କୁ ଘରେ ବସାଇ ବହୁତ ଚର୍ଚ୍ଚା କଲା ଏବଂ ବାହାନା କରି ସେ ଯୁବକ (ଯୁବରାଜ)ଟିକୁ କିଛି ଦୂରକୁ ନେଇଗଲା। ଏହା ମଧ୍ୟରେ ଧନୀ ଯୁବକର ଲୋକମାନେ ସେ ସ୍ତ୍ରୀଲୋକଟିକୁ ନେଇ ଅନ୍ୟତ୍ର ଚାଲିଯାଇଥିଲେ। ଏହି ସମୟରେ ଧନୀ ଯୁବକ ଯୁବରାଜଙ୍କୁ ଏକ ଗଛ ମୂଳରେ ବସେଇ ଏଇଠୁ ଆସୁଛି କହି କୁଆଡେ ଫେରାର୍ ହୋଇଗଲା ଏବଂ ତା ଲୋକମାନେ ସେହି ସୁନ୍ଦରୀ ସ୍ତ୍ରୀକୁ ନେଇଥିବା ସ୍ଥାନକୁ ଗଲା। ଏବଂ ଏହା ପରେ ଧନୀ ଯୁବକଟି ସେ ସ୍ତ୍ରୀ ଲୋକଟିକୁ ନେଇ କେଉଁଆଡେ ଫେରାର୍ ହୋଇଗଲା।

ଏଣେ ଯୁବରାଜ ଅପେକ୍ଷା କରିକରି ଶେଷରେ ଧନୀ ଯୁବକଟିର ଘରକୁ ଫେରିଲା। ତା ପରେ ଯୁବରାଜ ଯୁବରାଣୀଙ୍କୁ ସେଠାରେ ନ ପାଇ ଜାଣିବାକୁ ପାଇଲା ଯେ, ଧନୀ ଯୁବକଟି ରାଣୀକୁ କୁଆଡେ ନେଇଯାଇଛି। ତେଣୁ ସେ ମନ ଦୁଃଖରେ ରାଣୀକୁ ଖୋଜିବାରେ ଲାଗିଲା।

ଯୁବ ରାଜ ଯୁବ ରାଣୀଙ୍କୁ ଖୋଜି ଖୋଜି କ୍ରମେ ପାଗଳ ହୋଇଯିବାକୁ ବସିଲେ। ରାଣୀଙ୍କୁ କେଉଁଠୁ ଖୋଜିଖୋଜି ନପାଇ ଯୁବ ରାଜ ଶେଷରେ ଭିକାରୀ ହୋଇ ବୁଲିଲେ। କ୍ରମେ ଯୁବ ରାଜ ବୟସ୍କ ହୋଇଗଲେ। ଏହି ସମୟରେ ତାଙ୍କର ଆଉ ଏକ ଭିକାରୀ ସହ ଦୋସ୍ତି ଜମିଗଲା। ଦୁହେଁ ସାଙ୍ଗ ହୋଇ ଭିକ୍ଷା କଲେ।

ଦିନେ ଏ ଦୁହେଁ ଭିକାରୀ ଗୋଟିଏ ଗାଁରେ ପହଞ୍ଚିଲେ। ଏକ ଘରେ ଏ ଦୁହେଁ ଭିକ ମାଗୁଥିବାବେଳେ ରାଣୀ କିନ୍ତୁ ତାଙ୍କ ସ୍ୱାମୀଙ୍କୁ ଚିହ୍ନିପାରିଲା। ତେବେ ସେ ହଠାତ୍ ଚିହ୍ନା ନଦେଇ ଭିକ୍ଷା ବାହାନାରେ ଏକ ଚିଠି ତାଙ୍କ ଭିକ୍ଷା ଥାଳରେ ପକେଇ ଦେଲା।

ରାଣୀ ଭାବିଲେ ତାଙ୍କ ସ୍ୱାମୀ ଏହି ଚିଠି ପଢି ଆଜି ରାତିରେ ତାଙ୍କୁ ଏହି ଧନୀ ଯୁବକ ପାଖରୁ ମୁକ୍ତ କରିବେ।

କିନ୍ତୁ ଦୁର୍ଭାଗ୍ୟ, ଦୁଇ ଭିକାରୀ ଘରେ ପହଞ୍ଚିଲାପରେ ସବୁତକ ଭିକ୍ଷା ଚାଉଳକୁ ଏକତ୍ର କରିଦେଲେ। ଏବଂ ଏହି ଚିଠିଟି ଅନ୍ୟ ଭିକାରୀ ହାତରେ ପଡିଗଲା। ସେ ଭିକାରୀ ସବୁ ଜାଣିପାରିଲା ଏବଂ ତାର ସାଙ୍ଗକୁ କିଛି ନ କହି ସେହି ରାତିରେ ଯାଇ ରାଣୀଙ୍କୁ ସେଠାରୁ ନେଇ ଆସିଲା।

କିଛି ବାଟ ଆସିଲା ପରେ ରାଣୀ ଦେଖିଲେ ଯେ, ଏ ଭିକାରୀଟି ତାଙ୍କର ସ୍ୱାମୀ ନୁହେଁ। ରାଣୀ ଜାଣିପାରିଲେ ଏ ଭିକାରୀଟି ନିଶ୍ଚୟ ବଦମାସ୍ ଲୋକ ହୋଇଥିବ ଏବଂ ସାଙ୍ଗଦ୍ରୋହୀ। ତାଙ୍କ ସ୍ୱାମୀଙ୍କୁ ପାଇବା ପାଇଁ ଧନୀ ଯୁବକଟି ଠାରୁ ଚାଲିଆସି ପୁଣି ଏକ ଭିକାରୀ ହାବୁଡରେ ପଡିଗଲେ। ତାଙ୍କୁ ଭାରି କାନ୍ଦ ଲାଗିଲା। ତେଣୁ ରାଣୀ ଏକ ଉପାୟ ପାଞ୍ଚିଲେ। ଏହି ଭିକାରୀଟି

ପାଖରୁ କେମିତି ଖସିବାକୁ ହେବ ସେ ଚିନ୍ତା କଲେ।

କିଛି ବାଟ ଯିବା ପରେ ରାଣୀ କହିଲେଃ ପ୍ରିୟ୍ ନାଥ, ମୋତେ ଭାରି ଶୋଷ ହେଉଛି। କିଛି ପାଣି ଆଣି ମୋତେ ଦେଲେ ଯାଇ ମୁଁ ଚାଲିପାରିବି। ନହେଲେ ମୁଁ ଏଇଠି ବସିଲି।

ଭିକାରୀଟି ରାଣୀର ଚତୁରତା ବୁଝି ନ ପାରି ବହୁ ଦୂରକୁ ପାଣି ଆଣିବାକୁ ଚାଲିଗଲା ଯେମିତି ଭିକାରୀଟି କିଛି ବାଟ ଚାଲି ଯାଇଛି, ରାଣୀ ସେଠାରୁ ଖସି ଚାଲି ଆସିଲା।

ଭିକାରୀଟି ପାଖରୁ ଖସି ଆସିବା ପରେ ରାଣୀ ପୁଣି ଏକ ଚୋରଦଳ ହାବୁଡରେ ପଡିଗଲେ। ଚୋରଦଳର ସର୍ଦ୍ଦାର ଏହି ସ୍ତ୍ରୀ ଲୋକକୁ ଦେଖି ତାକୁ ଦଳରେ ରଖିବାକୁ ଇଚ୍ଛାକଲେ। ସେମାନେ ଏହି ସ୍ତ୍ରୀ ଲୋକଟିକୁ ତାଙ୍କର ରୋଷେୟା ଭାବେ ନିଯୁକ୍ତି କଲେ।

ବିଚାରୀ ଯୁବରାଣୀ ଏହି ଚୋର ଦଳ ସାଥୀରେ କିଛି ଦିନ ରହିବା ପରେ ସେଠୁ ଲୁଚିକି ଖସି ଚାଲିଆସି ଏକ ରାଜ୍ୟରେ ପହଞ୍ଚିଲେ। ସେଠାରେ ରାଣୀ ବନ ଦୁର୍ଗାଙ୍କୁ ତପସ୍ୟା କଲେ। ବନ ଦୁର୍ଗା ରାଣୀଙ୍କ ଭକ୍ତିରେ ସନ୍ତୁଷ୍ଟ ହୋଇ ତାଙ୍କୁ ଏକ ବର ପ୍ରଦାନ କଲେ, ଯାହା ଦ୍ୱାରା ରାଣୀ ଯେତେବେଳେ ଚାହିଁବେ ତାଙ୍କର ରୂପ ବଦଳେଇ ପାରିବେ।

ଏତିକିବେଳେ ରାଣୀ ପୁରୁଷ ବେଶରେ ଯାଇ ସେ ରାଜ୍ୟର ରାଜାଙ୍କ ଦରବାରରେ ପହଞ୍ଚିଲେ। ଏତେ ସୁନ୍ଦର ଯୁବକକୁ ଦେଖି ରାଜା ଅତ୍ୟନ୍ତ ପ୍ରୀତ ହୋଇଗଲେ। ରାଜାଙ୍କର ତ ପୁତ୍ର ନଥିଲା। ତେଣୁ ରାଜ ସଙ୍ଗେସଙ୍ଗେ ଏହି ସୌମ୍ୟକାନ୍ତ ଯୁବକକୁ ତାଙ୍କର ପୁତ୍ର ଭାବେ ଗ୍ରହଣ କରି ତାଙ୍କୁ ଯୁବରାଜ ଦାୟିତ୍ୱ ହସ୍ତାନ୍ତର କଲେ। ସେହିଦିନଠୁ ରାଣୀ ପୁରୁଷ ବେଶରେ ଯୁବରାଜ ଭାବେ ସେହି ରାଜ୍ୟର ଶାସନ ଭାର ତୁଲାଇଲେ।

ଯୁବରାଜ ଏକ ସୁଚିନ୍ତିତ ଯୋଜନା କଲେ। ତାଙ୍କର ରାଣୀବେଳର ଏକ ଫଟୋ ଚିତ୍ରକୁ ରାଜ୍ୟର ଏକ ଛକଯାଗାରେ ସ୍ଥାପନ କରି ଏହା ନିକଟରେ କିଛି ଗୁପ୍ତଚରଙ୍କୁ ଜଗାଇଲେ। ଏହି ଫଟୋକୁ ଦେଖି କିଏ କେମିତି ମନ୍ତବ୍ୟ ପ୍ରଦାନ କରୁଛି ଏବଂ କିପରି ଆଚରଣ ବ୍ୟକ୍ତ କରୁଛି ସେ ସମ୍ପର୍କରେ ଟିକିନିଖି ଖବର ରଖିବାକୁ ରାଜା ଗୁପ୍ତଚରମାନଙ୍କୁ ନିର୍ଦ୍ଦେଶ ଦେଲେ। ଫଟୋଟିକୁ ଦେଖି ଯିଏ ପ୍ରତିକ୍ରିୟା ପ୍ରକାଶ କଲା, ତାକୁ ତୁରନ୍ତ ବନ୍ଦୀ କରି ନେଇ ଆସିବାକୁ ରାଜା କଡ଼ା ହୁକୁମ୍ ଜାରି କଲେ।

କିଛି ଦିନ ଗଲା। ସେହି ଛକରେ ପ୍ରଥମେ ଧନୀ ଯୁବକଟି ଆସି ପହଞ୍ଚିଲା। ସେ ଛକରେ ଲଗାଯାଇଥିବା ସେହି ସୁନ୍ଦରୀ ସ୍ତ୍ରୀର ଫଟୋକୁ ଦେଖି ଚିହ୍ନି ପାରିଲା। ଏବଂ ଫଟୋଟି ନିକଟରେ ବସି ତାକୁ କାହିଁକି ଛାଡି ଚାଲି ଆସିଲା ବୋଲି କହିଲା ଏବଂ ସେ ବର୍ତ୍ତମାନ କେଉଁଠି ଅଛି, ଦୟାକରି ତା ସାଥୀରେ ଆସିବାକୁ ଅନୁରୋଧ କଲା। ଏହି ସମୟରେ ସେଠାରେ ଥିବା ଗୁପ୍ତଚର ତାକୁ ବନ୍ଦୀ କରି ନେଇଗଲେ।

ପୁଣି କିଛି ଦିନ ଗଲା। ଜଣେ ଭିକାରୀଟି ଆସି ସେହି ଛକରେ ପହଞ୍ଚିଲା। ଭିକାରୀଟି ଫଟୋରେ ଥିବା ସେହି ସ୍ତ୍ରୀକୁ ଚିହ୍ନି ପାରି ତା ସାଙ୍ଗରେ ମନକୁ କନ କିଛି ବିଳାପ କଲା ଏବଂ

କାନ୍ଦିଲା । ସେ କାହିଁକି ତାକୁ ପାଣି ପାଇଁ ପଠେଇ ଦେଇ ଲୁଚିକି ଚାଲି ଆସିଲା ବୋଲି ଭିକାରୀଟି ଫଟୋକୁ ପଚାରୁଥିବାବେଳେ ଗୁପ୍ତଚରମାନେ ଆସି ତାକୁ ବନ୍ଦୀ କରି ନେଇଗଲେ ।

ପୁଣି କିଛି ଦିନ ଗଲା । ଏହା ପରେ ଚୋର ଦଳର ସର୍ଦ୍ଦାର ଆସି ସେହି ଛକରେ ପହଞ୍ଚି ସେହି ସ୍ତ୍ରୀ ଲୋକଟିକୁ ଫଟୋରୁ ଚିହ୍ନି ପାରିଲା ଏବଂ କାହିଁକି ତାଙ୍କଠାରୁ ଲୁଚିକି ପଳେଇ ଆସିଲା ବୋଲି ଜେରା କରୁଥିଲା । ଏହି ସମୟରେ ଗୁପ୍ତଚରମାନେ ଆସି ଚୋର ଦଳର ସର୍ଦ୍ଦାରଙ୍କୁ ବନ୍ଦୀ କରି ରାଜାଙ୍କ ନିକଟକୁ ନେଇଗଲେ ।

ପୁଣି କିଛି ଦିନ ଗଲା । ଶେଷରେ ନିଜେ ରାଜା ତାଙ୍କ ରାଣୀଙ୍କୁ ଖୋଜି ଖୋଜି ପାଗଳ ଓ ଭିକାରୀ ବେଶରେ ସେହି ଛକରେ ଆସି ପହଞ୍ଚିଲା । ନିଜ ରାଣୀଙ୍କ ଫଟୋକୁ ଚିହ୍ନିପାରି କାନ୍ଦି ପକେଇଲା ଏବଂ ସେ କେଉଁଠି ଅଛି ଦୟାକରି ତାକୁ ଦେଖା ଦିଅନ୍ତୁ ବୋଲି ଫଟୋଟି ନିକଟରେ ଭିକାରୀ ରୂପକ ରାଜା କାନ୍ଦି ପକାଇଲା । ଏହା ପରେ ଏହି ଭିକାରୀଟିକୁ ମଧ୍ୟ ଗୁପ୍ତଚରମାନେ ରାଜାଙ୍କ ନିକଟକୁ ବନ୍ଦୀ କରି ନେଇଗଲେ ।

ରାଜାଙ୍କ ନିକଟରେ ଦରିଦ୍ର ଭିକାରୀଟି ଯାଇ ହାଜର ହେଲା । ସଙ୍ଗେସଙ୍ଗେ ରାଜା ନିଜର ପୁରୁଷ ବେଶ ପରିତ୍ୟାଗ କରି ନିଜର ନାରୀ ବେଶ ଧାରଣ କଲେ । ଭିକାରୀ ରୂପକ ରାଜା ସଙ୍ଗେସଙ୍ଗେ ନିଜର ରାଣୀଙ୍କୁ ଚିହ୍ନି ପାରିଲେ । ଦୁହେଁ ପରସ୍ପରକୁ କୋଳାକୋଳି କଲେ ଏବଂ ବହୁତ ଗେଲ କଲେ । ଏହା ପରେ ରାଣୀ ତାଙ୍କର ସ୍ୱାମୀଙ୍କୁ ଏହି ରାଜ୍ୟର ଶାସନ ଭାର ସମ୍ଭାଳିବାକୁ ଦେଇ ନିଜେ ରାଣୀ ହୋଇ ରହିଲେ ।

ଏହା ପରେ ରାଜା ବନ୍ଦୀଥିବା ଧନୀ ଯୁବକ, ଭିକାରୀ ଓ ଚୋର ଦଳର ସର୍ଦ୍ଦାରଙ୍କୁ ଶୂଳୀରେ ବସାଇବାକୁ ନିର୍ଦ୍ଦେଶ ଦେଇ ରାଣୀଙ୍କ ସହ ଆନନ୍ଦରେ ଜୀବନ ବିତାଇଲେ ।







# କଟାମୁଣ୍ଡ କାହାଣୀ

(ରାୟଗଡା, କନ୍ଧ ଲୋକ କଥା)

ଗୋଟିଏ ଗାଁରେ କୁଡିଆ ଲୋକଟିଏ ଥିଲା । କିଛି କାମ ନ କରି ଖାଲି ଶୋଇ ରହୁଥିଲା । ସେ ଭାରୀ ଖାଦ୍ୟଲୋଭୀ ଥିଲା । କାମଧନ୍ଦା ନ କରି ସବୁବେଳେ ଖାଲି ଖାଇବା କଥା ଚିନ୍ତା କରୁଥିଲା । ଅଳସୁଆ ଥିବାରୁ ଲୋକଟି ପାଖରେ ଟଙ୍କା ନଥିଲା । ତେଣୁ ସେ ଭଲକରି କିଛି ଖାଇବାକୁ ପାଉ ନଥିଲା ।

ଖାଇବାକୁ ନ ପାଇ ଦିନେ ସେ ତାର ଗୋଟିଏ ହାତ କାଟି ବିକିଦେଲା । ସେହି ଟଙ୍କାରେ ସେ କିଛି ଦିନ ଭଲକରି ଖାଇଲା । ସେହି ଟଙ୍କାତକ ସରିଯିବାରୁ ପୁଣି ତାର ଆଉ ଗୋଟିଏ ହାତ ବିକିଦେଲା ।

କିଛି ଦିନ ପରେ ଦୁଇ ଗୋଡ଼ ବିକି ଟଙ୍କା ଆଣିଲା । ସେଥିରେ ସେ କିଛି ଦିନ ଚଳିଲା । ପୁଣି ଟଙ୍କା ଅଭାବରୁ ଖାଦ୍ୟ ପାଇଲା ନାହିଁ। ଏହାପରେ ସେ ତାର ଗଣ୍ଡିକୁ ବିକିଦେଲା ।

ଶେଷରେ କେବଳ ତାର ମୁଣ୍ଡଟି ରହିଲା । ଗଣ୍ଡିଟି ବିକି ଦେଇଥିବାରୁ ସେଥିରେ ପେଟଟି ଚାଲି ଯାଇଥିଲା । କେବଳ ମୁଣ୍ଡଟି ରହିଥିଲା । ପେଟ ନଥିବାରୁ ତାକୁ ଆଉ ଭୋକ ହେଉ ନଥିଲା । ତେଣୁ କରି ତାର ଆଉ ଖାଇବା ଚିନ୍ତା ନଥିଲା ।

କେବଳ ମୁଣ୍ଡଟି ଗଡିଗଡି ଏଣେତେଣେ ଯାଉଥିଲା । ଦିନେ ଏହି କଟା ମୁଣ୍ଡଟି ଗଡିଗଡି ଯାଇ ଗୋଟିଏ ଖଜୁରୀ ଗଛରେ ଲାଗି ରହିଗଲା । କିଛି ଝିଅମାନେ ଜଙ୍ଗଲକୁ ଖଜୁରୀ ତୋଳିବାକୁ ଆସିଥିଲେ। ଜଣେ ଝିଅ ଖଜୁରୀ ତୋଳୁତୋଳୁ ଏହି କଟାମୁଣ୍ଡଟି ତାର ଡାଲୁଡିରେ ପଶିଗଲା । ଝିଅଟି ସେଥିରେ ଖଜୁରୀ କୋଳି ଭର୍ତ୍ତି କରି ଦେଇଥିବାରୁ ସେ କିଛି ଜାଣିପାରିଲା ନାହିଁ।

ଝିଅଟି ଯେତେବେଳେ ଘରକୁ ଫେରି ଖଜୁରୀ କୋଳି ଓଜାଡି ଦେଲା ଡାଲୁଡିରୁ ମୁଣ୍ଡଟି ବାହାରିଲା । ଘର ଲୋକେ ଏହା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ। ମୁଣ୍ଡଟି ଘର ଲୋକଙ୍କୁ ଗୁହାରୀ ହେଲା ଓ ତାଙ୍କ ଘରେ ରହିବାକୁ ଅନୁରୋଧ କଲା । ମୁଣ୍ଡଟି ଘରେ ରହି ଧୀରେଧୀରେ ସବୁ କାମ କଲା । ଧୀରେଧୀରେ ମୁଣ୍ଡଟି ଘର ଲୋକଙ୍କର ପ୍ରିୟ ପାତ୍ର ହୋଇ ଗଲା ।

ମୁଣ୍ଡଟି ସେହି ଝିଅଟିକୁ ମନେମନେ ବହୁତ ଭଲ ପାଉଥିଲା । ଝିଅଟି ପାଇଁ ମୁଣ୍ଡଟି ଜଙ୍ଗଲକୁ ଯାଇ ଫୁଲ ତୋଳି ଆଣି ଦେଲା । ତା ପାଇଁ ଜଙ୍ଗଲରୁ ଆମ୍ବ, ପଣସ ଆଣି ଦେଲା । ମୁଣ୍ଡଟି ଝିଅଟିକୁ ଏମିତି ଭଲ ପାଇଲା, ଝିଅଟି ମଧ୍ୟ ତାର ପ୍ରେମରେ ପଡିଗଲା ।

ଝିଅଟି ମୁଣ୍ଡଟିକୁ ବାହା ହେବାକୁ ଇଚ୍ଛା କରିବାରୁ ଘର ଲୋକେ ବାଧ୍ୟ ହୋଇ ମୁଣ୍ଡଟି ସହ ତାକୁ ବାହାଦେଲେ। ମୁଣ୍ଡ ଝିଅଟିକୁ ବାହା ହୋଇ ଯୌତୁକ ଆକାରରେ କିଛି ଧନ ଆଣିଲା ।

ଏହି ଯୌତୁକ ଟଙ୍କା ନେଇ ସେ ପ୍ରଥମେ ତାର ଦୁଇ ହାତ କିଣିଥିବା ଲୋକ ପାଖକୁ ଗଲା ଏବଂ ତା ପାଖରୁ ତାର ଦୁଇ ହାତକୁ ଟଙ୍କା ଦେଇ ଫେରାଇ ଆଣିଲା । ତା ପରେ ଯୌତୁକ ଟଙ୍କାରେ ତାର ଗୋଡ, ଗଣ୍ଡି ଓ ପେଟ ଆଦି ସବୁ ଅଙ୍ଗପ୍ରତ୍ୟଙ୍ଗ ଫେରେଇ ଆଣିଲା । ସବୁତକ ଅଙ୍ଗପ୍ରତ୍ୟଙ୍ଗକୁ ଯୋଡି ସେ ପୁଣି ପୂର୍ବ ପରି ତାର ନିଜ ରୂପ ଫେରି ପାଇଲା। ଝିଅଟି ଏହା ଦେଖି ଅତି ଖୁସି ହୋଇଗଲା । ସ୍ୱାମୀ, ସ୍ତ୍ରୀ ଦୁହେଁ ଆନନ୍ଦରେ ରହିଲେ।





# କୁଜା ଓ କଣା ଦୁଇ ସାଙ୍ଗ

(ନବରଙ୍ଗପୁର, ଅମାନତ୍ୟ ଲୋକ କଥା)

କୁଜା ଓ କଣା ଦୁଇ ସାଙ୍ଗ ଥିଲେ। ସେମାନେ ପିଲାଟିବେଳୁ ବଡ଼ ହେବା ପର୍ଯ୍ୟନ୍ତ ସାଙ୍ଗ ହୋଇକି ରହିଆସୁଥିଲେ। ଦୁହେଁ ଭିକ ମାଗି ଚଳୁଥିଲେ।

ସେମାନଙ୍କର ଏପରି ଦୟନୀୟ ଅବସ୍ଥା ଦେଖି ଗାଁର ଜଣେ ସାଉକାର୍ ସେ ଦୁହିଁଙ୍କୁ ନିଜ ଘରେ କାମ କରିବାକୁ କହିଲା। ସାଉକାର୍ ଘରେ ଛେଳି ଚରାଇବା କାମରେ କୁଜା ଓ କଣା ଲାଗିଗଲେ। ଏହି ଚାକିରୀ ପାଇ କୁଜା ଓ କଣା ବହୁତ ଖୁସି ହୋଇଗଲେ। ସେମାନେ ସାଉକାର୍ ଘରେ ଖାଇଲେ, ପିଇଲେ ଓ ଛେଳି ଚରାଇଲେ। ସେମାନେ ସାଉକାର୍ ଘରେ ବେଶ୍ ଭଲରେ ଥିଲେ।

କୁଜା ଓ କଣା ପାଳିକରି ଜଙ୍ଗଲରେ ଛେଳି ଜଗନ୍ତି। ସେଦିନ କୁଜା କେଉଁଠିକୁ ଯାଇଥାଏ। କଣା ଛେଳି ପଲଙ୍କୁ ଜଗିଥାଏ ଓ ଗଛମୂଳେ ବସି ଆମ୍ବ ଖାଉଥାଏ। କଣା ଚାରିପଟେ ଛେଳିପଲ ବେଢି ରହିଥାନ୍ତି।



# ଟିକି ପିଲା ଓ ଠେକୁଆ

(ନବରଙ୍ଗପୁର, ଭତରା ଲୋକ କଥା)

ଗୋଟିଏ ଗାଁରେ ବୁଢା, ବୁଢି ରହୁଥିଲେ। ସେମାନଙ୍କର ବକଟେ ବୋଲି ପୁଅ କି ଝିଅ ନଥିଲେ। ବହୁ ଦିନ ପର୍ଯ୍ୟନ୍ତ ସେମାନଙ୍କର ପୁଅଝିଅ ନ ହେବାରୁ ଗାଁ ଲୋକେ ବାରକଥା କହିବାକୁ ଲାଗିଲେ।

ଦିନେ ଇଶ୍ୱର ବୁଢା, ବୁଢିଙ୍କ ଡାକ ଶୁଣିଲେ। ବୁଢାକାଳେ ସେମାନଙ୍କର ପୁଅ ବକଟେ ହେଲା। ପୁଅ ଅତି ଗେହ୍ଲାରେ ବଢିଲା। ବୁଢା, ବୁଢି କାନ୍ଦୁଲ ଫସଲ କରିଥାନ୍ତି। ପୁଅ କାନ୍ଦୁଲ ବାଡ ଜଗିବାକୁ ଯାଏ। ସାଙ୍ଗରେ ଭାତ, ଡାଲି, ତର୍କାରୀ ନେଇକି ଯାଏ। ଭୋକ ହେଲେ କାନ୍ଦୁଲ ବାଡରେ ଖାଏ।

ଦିନେ ଠେକୁଆଟିଏ ପିଲାଟି ପାଖକୁ ଆସି ସୁନ୍ଦର ଭାତ, ତର୍କାରୀ ଖାଉଥିବାର ଦେଖି ତାର ଖାଇବାକୁ ଲୋଭ ହେଲା । ସେ ଗୋଟିଏ ଉପାୟ ପାଞ୍ଚିଲା । ଜଙ୍ଗଲରେ ଭଲ ସାହଡା କୋଳି ହୋଇଛି କହି ପିଲାଟିକୁ କୋଳି ଆଣିବାକୁ ପଠେଇ ଦେଲା । ଯେମିତି ପିଲାଟି କୋଳି ଆଣିବାକୁ ଯାଇଛି, ଠେକୁଆ ସବୁତକ ଭାତ ଖାଇ ଦେଲା ।

ପିଲାଟି ଆସି ଦେଖିଲା ବେଳକୁ ଭାତ, ତର୍କାରୀ ନାହିଁ। ଠେକୁଆର ଭାତ, ତର୍କାରୀ ଖାଇବାର ସୁଆଦ ପାଟିରେ ଲାଗିଗଲା । ତେଣୁ ଠେକୁଆ ଏମିତି ସବୁଦିନ ପିଲାଟିକୁ ଏଣୁତେଣୁ ବାହାନା କରି ଜଙ୍ଗଲକୁ ପଠାଇ ଦେଇ ନିଜେ ସବୁ ଭାତ, ତର୍କାରୀ ଖାଇଦିଏ। ପିଲାଟି ନଖାଇ ନ ପିଇ ଦିନକୁ ଦିନ କଣ୍ଟା ହେବାକୁ ଲାଗିଲା । ବୁଢା, ବୁଢି ଏହା ଦେଖି ଆଶ୍ଚର୍ଯ୍ୟ ହେଉଥାନ୍ତି । ଭଲ ଭଲ ଭାତ, ତର୍କାରୀ, ଡାଲି, ଖଟା, ଭଜା କରି ତ ଖାଇବାକୁ ଦେଉଛନ୍ତି, ହେଲେ ପିଲାଟା କାହିଁକି ଶୁଖି ଯାଉଛି, ଏହା ଭାବି ବୁଢା, ବୁଢି ବେସ୍ତ ହୋଇ ପଡିଲେ। ତେବେ ବହୁ ପଚରା ପଚରି କରିବା ପରେ ବୁଢା, ବୁଢି ଠେକୁଆ ସମ୍ପର୍କରେ ଜାଣିବାକୁ ପାଇଲେ। ସେମାନଙ୍କର ସନ୍ଦେହ ହେଲା, ଠେକୁଆ ପିଲାକୁ ଭଣ୍ଡେଇ ଭାତ, ତର୍କାରୀ ଖାଇଯାଉଛି ।

ଦିନେ ପିଲାଟିର ବୁଢା ବାପା, ମା ଘଟଣା ଜାଣିବାକୁ ଆସିଲେ। ସେଦିନ ପିଲାଟିକୁ ଘରେ ଛାଡି ବୁଢା, ବୁଢି ଦୁହେଁ କାନ୍ଦୁଲ ବାଡକୁ ଆସିଲେ। ସେମାନେ ମଇଦା ଅଠାରେ ନିଜର ପୁଅ ଆକୃତିର ଏକ ପିଲାର ମୂର୍ତ୍ତି ତିଆରି କରି କାନ୍ଦୁଲ ବାଡ ନିକଟରେ ବସେଇ ଦେଲେ। ସବୁଦିନ ପରି ଠେକୁଆ ଆସିଲା । ପିଲାଟିକୁ କହିଲା: ଆଜି ତାକୁ କିଛି କଷି କାକୁଡି, କୁରିଲା କାନ୍ଦୁଲ ଖାଇବାକୁ ଇଚ୍ଛା ହେଉଛି। ତେଣୁ ବଣରୁ ତାକୁ ଏହା ଆଣିବାକୁ କହିଲା । ପିଲାଟି କିଛି ନ ଶୁଣି ସେଇଠି ବସି ରହିଲା । ପିଲାଟି କିଛି ନ ଶୁଣିବାରୁ ଠେକୁଆଟିର ରାଗ ହେଲା । ସେ ତାର ହାତରେ ପିଲାଟିକୁ ଠେଲି ଦେବାକୁ ଚେଷ୍ଟା କରୁଥିଲା । ମଇଦା ଅଠାରେ ତା ହାତ ଲାଗିଗଲା ଯେ, ଆଉ ଛାଡିଲା ନାହିଁ। ଏହାପରେ ସେ ଗୋଡ, ହାତ ବାଡେଇଛାଟି ହେବାରୁ ସେ ସମ୍ପୂର୍ଣ୍ଣ ଭାବେ ସେହି ଅଠାରେ ଲାଗିଗଲା। ଆଉ ବାହାରି ଯାଇ ପାରିଲା ନାହିଁ।

ବୁଢା, ବୁଢି ସେଠାରେ ପହଞ୍ଚି ଠେକୁଆଟିକୁ ଧରି ଘରକୁ ନେଇଗଲେ। ବୁଢି କହିଲା: କାଲି ମୋର ଏକାଦଶି ବ୍ରତ ସରିବ, ତେଣୁ ଆସନ୍ତା କାଲି ଏହି ଠେକୁଆଟିକୁ ମାରି ଖାଇବା ।





# ବାଘ, ଛେଳି କାହାଣୀ

(ନବରଙ୍ଗପୁର, ଭତରା ଲୋକ କଥା)

ଗୋଟିଏ ଜଙ୍ଗଲରେ ଗୋଟିଏ ବାଘୁଣୀ ଥିଲା। ସେହି ଜଙ୍ଗଲରେ ବି ଗୋଟିଏ ମାଈ ଛେଳି ଥିଲା। ଦୁହେଁ ମୈତ୍ର ବସିଥିଲେ।

ବାଘ ଓ ଛେଳିଙ୍କ ମଧ୍ୟରେ ବନ୍ଧୁତା! ଜଙ୍ଗଲର ଅନ୍ୟ ପଶୁମାନେ ଏହା ଦେଖି ନାକ ଟେକୁଥିଲେ। ସେମାନେ ବାଘ, ଛେଳିଙ୍କର ଏହି ସମ୍ପର୍କକୁ ଆଖିରେ ଦେଖି ପାରୁନଥିଲେ। କିନ୍ତୁ ଦୁହେଁ ସାଙ୍ଗ ହୋଇ ପାଖାପାଖି ରହୁଥିଲେ।

ତେବେ ସବୁଠୁ ବଡ଼ ମଜାର ଘଟଣା, ବାଘ ଓ ଛେଳି ଦୁହେଁ ଏକ ସମୟରେ ଗର୍ଭବତୀ ହେଲେ। ଦୁହିଁଙ୍କର ଚାରୋଟି ଲେଖାଏ ଛୁଆ ଜନ୍ମ ହେଲା। ଛେଳିର ଚାରୋଟି ଛୁଆ ମୁଣ୍ଡୁଲୁ,

ଗୁଡୁଲୁ, ହାବୁଲୁ ଓ ପେଟୁଲୁ ଏବଂ ବାଘର ଚାରୋଟି ଛୁଆ କିମ୍, ଟିମ୍, ସିମ୍ ଓ ଚିମ୍। ଏମାନେ ଏକତ୍ର ସାଥୀ ହୋଇ ଖେଳକୁଦ କରନ୍ତି।

ଦିନକୁ ଦିନ ଛେଳି ଛୁଆମାନେ ଘାସପତ୍ର ଖାଇ କଉତୁକିଆ ହୋଇପଡିଲେ। ବାଘର କିନ୍ତୁ ମତଲବ ଭଲ ନଥିଲା। ସେ ଡଉଲ ଡାଉଲ ଛେଳିଛୁଆଙ୍କୁ ଖାଇବାକୁ ମନେମନେ ଯୋଜନା କରୁଥାଏ। ଦିନେ ବାଘ ଅସୁସ୍ଥ ହେବାର ଅଭିନୟ କରି ତା ପାଖରେ ଛେଳି ଛୁଆକୁ ଶୋଇବାକୁ ଛେଳିକୁ କହିଲା। ଛେଳି ଦେଖିଲା ବାଘ ଅସୁସ୍ଥ ହୋଇଛି। ସେ ସାଥୀରେ ତାର ଛୁଆଙ୍କୁ ଶୋଇବାକୁ ଇଛା କରୁଛି। କିନ୍ତୁ ବାଘ ଯେ, ହିଂସ୍ର କେତେବେଳେ ମୋଡି ଖାଇଦେବ କହିହେବ ନାହିଁ। ଏହି ଭୟରେ ମା ଛେଳିଟି ଥରି ଉଠିଲା। ତେବେ କିଏ ବାଘ ପାଖକୁ ଶୋଇବାକୁ ଯିବ, ପିଲାମାନଙ୍କ ମଧ୍ୟରେ ଭାଳେଣି ପଡିଗଲା।

ଛେଳି ଛୁଆମାନଙ୍କ ମଧ୍ୟରୁ ମୁଣ୍ଡୁଲୁ ଅତି ବୁଦ୍ଧିଆ ଓ ସାହସୀ ଥିଲା। ସେ କହିଲା: ମୁଁ ବାଘୁଣୀ ମାଉସୀ ପାଖକୁ ଶୋଇବାକୁ ଯିବି। ରାତି ହେଲା। ମୁଣ୍ଡୁଲୁ ବାଘୁଣୀ ପାଖକୁ ଶୋଇବାକୁ ଗଲା। ବାଘୁଣୀ ମୁଣ୍ଡୁଲୁକୁ ଦେଖି ତା ପାଟିରୁ ଲାଳ ଗଡିବାକୁ ଲାଗିଲା। କେମିତି ରାତି ଅଧିକ ହେବ, ସେ ଏହି ଡଉଲ ଡାଉଲ ଛେଳି ଛୁଆଟିକୁ କିପରି ଖାଇବ ସେହି ଚିନ୍ତାରେ ବିଭୋର ହୋଇଗଲା।

ରାତି ହେବାରୁ ବାଘୁଣୀ ଓ ଛେଳି ଛୁଆ ଦୁହେଁ ଶୋଇଲେ। ଛେଳି ଛୁଆଟି କିନ୍ତୁ ଅଧିକ ଚାଲାକ୍ ଥିଲା। ସେ ଯେଉଁଠି ଶୋଇଥିଲା, ତା ସ୍ଥାନରେ ଏକ ବାଘ ଛୁଆକୁ ଆଣି ଶୁଆଇ ଦେଲା ଓ ସେ ସେଠାରୁ ଚାଲିଗଲା। ବାଘୁଣୀ କିନ୍ତୁ ଆରାମରେ ଶୋଇ ପଡିଥିଲା। ଯେମିତି ରାତି ଅଧ ହୋଇଛି, ବାଘୁଣୀ ନିଦ ବାଉଳାରେ ଉଠି ସେଠାରେ ଶୋଇଥିବା ଛୁଆଟିକୁ ଖାଇଦେଲା। ସେ ବାଘ ଛୁଆଟି ବୋଲି ଜାଣି ପାରିଲା ନାହିଁ। ଛୁଆଟିକୁ ଖାଇ ଦେଇ ଆରାମରେ ପୁଣି ଶୋଇ ପଡିଲା।

ଏମିତିକରି ଚାରି ଦିନ ମଧ୍ୟରେ ବାଘୁଣୀ ତାର ନିଜର ଚାରି ଶିଶୁଙ୍କୁ ଖାଇଦେଲା, କିନ୍ତୁ କିଛି ଜାଣି ପାରିଲା ନାହିଁ। ଶେଷରେ ଯେତେବେଳେ ତାର ଛୁଆମାନଙ୍କୁ ଦେଖିବାକୁ ପାଇଲା ନାହିଁ ଏବଂ ଛେଳିର ସବୁ ଛୁଆଙ୍କୁ ଦେଖିଲା ତାର ମନରେ ସନ୍ଦେହ ହେଲା। ଏବଂ ସେ ନିଜେ ତାର ଛୁଆଙ୍କୁ ଖାଇ ଦେଇଛି ବୋଲି ଛେଳି ଛୁଆ ମୁଣ୍ଡୁଲୁ ନିକଟରୁ ଜାଣିବାକୁ ପାଇଲା। ଏହା ପରେ ବାଘୁଣୀ ଅଧିକ ରାଗିଗଲା। ସେ ଛେଳି ଉପରେ ପ୍ରତିଶୋଧ ନେବାକୁ ଜାଗ୍ରତ ହୋଇଗଲା। ଯେହେତୁ ସେ ଛେଳିର ମୈତ୍ର ଥିଲା, ତେଣୁ ସେ ସିଧା ସଳଖ ଛେଳି ଉପରେ ଆକ୍ରମଣ କଲା ନାହିଁ।

ଛେଳି ଛୁଆଙ୍କୁ ମାରିବା ପାଇଁ ବାଘୁଣୀ ଏକ ଲାଞ୍ଜଖଣ୍ଡି ବାଘକୁ ପଠେଇଲା। ଲାଞ୍ଜଖଣ୍ଡି ବାଘ ଆସି ଛେଳି ଛୁଆକୁ ଡରେଇଲା। ଛେଳିଛୁଆମାନେ ଏକତ୍ର ମିଶି ଲାଞ୍ଜଖଣ୍ଡି ବାଘ ଉପରକୁ

ଆକ୍ରମଣ କଲେ। ବାଘଟି ଭୟରେ ସେଠାରୁ ଚାଲିଗଲା। ଏହା ପରେ ଛେଳି ଓ ତାର ଛୁଆମାନେ ସେଠାରୁ ଚାଲିଗଲେ। ଜଙ୍ଗଲରେ ଏକ ଗଛରେ ଚଢି ଆଶ୍ରୟ ନେଲେ। ବାଘ ତାର ସବୁ ବାଘ ଭାଇମାନଙ୍କୁ ସାଙ୍ଗରେ ଡାକି ନେଇ ଛେଳିମାନଙ୍କୁ ପିଛା କଲେ।

ବାଘମାନେ ଛେଳି ଓ ତାର ଛୁଆମାନଙ୍କୁ ଖୋଜି ଖୋଜି ଶେଷରେ ଗୋଟିଏ ଗଛ ଉପରେ ବସିଥିବାର ସେମାନେ ଦେଖିଲେ। ବାଘମାନେ ଛେଳି ଓ ତାର ଛୁଆମାନଙ୍କୁ ଦେଖିବା ପରେ ସେମାନଙ୍କର ରାଗ ଅଧିକ ବଢିଗଲା। ସେମାନେ ଜଣ ଜଣକ ଉପରେ ଚଢାଚଢି ହୋଇ ଗଛର ଉଚତା ପର୍ଯ୍ୟନ୍ତ ଲମ୍ବିବାକୁ ଚେଷ୍ଟା କଲେ।

ପ୍ରଥମେ ଭୂମି ଉପରେ ଲାଞ୍ଜ ଖଣ୍ଡି ବାଘ ଶୋଇ ରହିଲା। ତା ଉପରକୁ ତା ଉପର ବାଘମାନେ ଚଢି ଚଢି ଗଛରେ ଥିବା ଛେଳି ମାନଙ୍କ ପାଖରେ ପହଞ୍ଚିଯିବାକୁ ସଫଳ ହୋଇଗଲେ। ଏହି ସମୟରେ ଛେଳି ଛୁଆ ମୁଣ୍ଡୁଲୁ ଏକ ଉପାୟ ବାହାର କଲା। ସେ ତାର ମାଆ ଛେଳି ଉଦ୍ଦେଶ୍ୟରେ କହିବାକୁ ଲାଗିଲା। ମାଆ: ଆମେ ଗଛ ମୂଳେ ଯେଉଁ ବମ୍‌ଟି ରଖିଥିଲେ, ତାହା ଆଉ କେତେ ସମୟ ମଧ୍ୟରେ ଫୁଟିବ? ବମ୍ ଫୁଟିବା କଥା ଶୁଣି ସବା ତଳେ ଥିବା ଲାଞ୍ଜ ଖଣ୍ଡି ବାଘ ଛାନିଆରେ ହଗିମୂତି ଆଣିଏ। ସେ ସେଠାରୁ ଏକା ନିଶ୍ୱାସରେ ଦଉଡି ଛୁ।

ଯେମିତି ଲାଞ୍ଜ ଖଣ୍ଡି ବାଘ ସେଠାରୁ ଦଉଡି ଚାଲି ଗଲା, ତା ଉପରକୁ ଉପରେ ଥିବା ବାଘମାନେ ଦୁଲ୍‌ଦାଲ୍ ତଳେ ପଡିଗଲେ। ତଳେ ପଡି ବାଘମାନଙ୍କ ଆଣ୍ଠୁଗଣ୍ଠି ଛିଣ୍ଡିଗଲା। ସେମାନଙ୍କ ମଧ୍ୟରୁ ସମସ୍ତେ ପଡି ଆହତ ହୋଇ ସେଠାରୁ ପ୍ରାଣ ବିକଳେ ଚାଲିଗଲେ। ମୁଣ୍ଡୁଲୁର ଏହି ଚତୁରତା ପାଇଁ ସେଦିନ ବି ସେମାନେ ବାଘମାନଙ୍କ କବଳରୁ ରକ୍ଷା ପାଇଗଲେ।

ଦୁଇ ଦୁଇ ଥର ବାଘ ମୁହଁରୁ ରକ୍ଷା ପାଇବା ପରେ ଛେଳିମାନେ ସେଠାରୁ ବହୁ ଦୂରକୁ ଚାଲିଯିବାକୁ ଯୋଜନା କଲେ। ସେହିଦିନ ମା ଛେଳି ଓ ତାର ଛୁଆମାନେ ସେହି ଜଙ୍ଗଲ ଛାଡି ବହୁ ଦୂରକୁ ଚାଲି ଆସି ଏକ ଜନବସତିରେ ପହଞ୍ଚିଗଲେ। ସେଠାରେ ମଣିଷମାନେ ରହୁଥିଲେ। ଛେଳିମାନେ ମଣିଷମାନଙ୍କ ନିକଟରେ ଆଶ୍ରୟ ନେଲେ।

ସେହିଦିନଠାରୁ ମଣିଷମାନେ ଛେଳିକୁ ପାଳି ଆସୁଛନ୍ତି ଏବଂ ଛେଳିମାନେ ଜଙ୍ଗଲରେ ନ ରହି ମଣିଷର ଗୃହପାଳିତ ପଶୁ ହୋଇ ରହିଛି।





# ଚାଷୀ, ବାଘ ଓ ଚତୁର ବିଲୁଆ

(ନବରଙ୍ଗପୁର ଜିଲ୍ଲାର ଅମାନାତ୍ୟ ଲୋକ କଥା)

ଚାଷୀଟିଏ ଡ଼ଙ୍ଗର ବିଲରେ ହଳ କରୁଥାଏ। ତାର କେଉଁ ଆଡକୁ ନିଘା ନଥାଏ। ନିଧୂମ ଖରାବେଳ, କେହି କେଉଁଠି ଦେଖା ଯାଉ ନଥାନ୍ତି।

ନିକଟରେ ଏକ ପଙ୍କ ପୋଖରୀରେ ବାଘଟିଏ ଲାଖିଯାଇ ଚିତ୍କାର କରୁଥାଏ। ପଙ୍କରେ ଲାଖି ଯାଇଥିବାରୁ ଯେତେ ଚେଷ୍ଟା କରି ମଧ୍ୟ ବାଘଟି ଉଠି ପାରୁନଥାଏ।

ଖରାବେଳ ସମୟ ହୋଇଥିବାରୁ ଆଖପାଖରେ କିଏ କେଉଁଠି ଦିଶୁ ନଥାନ୍ତି। କେବଳ ଚାଷୀଟିଏ ତା ବିଲରେ ହଳ କରୁଥାଏ।

ବାଘଟି ବିକଳ ହୋଇ ଚାଷୀଟିକୁ ଡାକିଲା। କହିଲା: ଚାଷୀ ଭାଇ, ଦୟାପୂର୍ବକ ମୋତେ ଏହି ବିପଦରୁ ଉଦ୍ଧାର କର। ମୁଁ ତମକୁ ବହୁତ ସାହାଯ୍ୟ କରିବି। ମୁଁ ତମକୁ ଏତେ ଧନ, ସୁନା ଦେବି ଯେ, ତମେ ସାତ ପୁରୁଷ ବସି ଖାଇଲେ ବି ସରିବ ନାହିଁ।

ଚାଷୀ କହିଲା: ତୁମେ ଭାଇ ହିଂସ୍ର ଜନ୍ତୁ, ତୁମକୁ ବା କେଉଁ ବିଶ୍ୱାସ ଅଛି। ତୁମକୁ ଉଦ୍ଧାର କରି ସାରିବା ପରେ ତୁମେ ମୋତେ ଖାଇଦେବ।

ବାଘ ଚାଷୀଟିର ଏହି କଥା ଶୁଣିବା ପରେ ଡ଼ଙ୍ଗର ଦେବତାଙ୍କୁ ସାକ୍ଷୀ ରଖି ରାଣ ପକେଇଲା ଏବଂ ନିଜର ଆଖି, ନାକ ଛୁଇଁଲା। ବାଘର ଏହି କଥାରେ ଭଳିଯାଇ ଚାଷୀ

ହଳ ବନ୍ଦ କରି ତାକୁ ଉଦ୍ଧାର କରିବାକୁ ଆଗେଇ ଆସିଲା। ଚାଷୀ ତାର ହଳ ଫିଟାଇ ଲଙ୍ଗଳ ଦଉଡିକୁ ବାଘ ନିକଟକୁ ପକେଇଲା। ବାଘ ଏହି ଦଉଡ଼ିକୁ ପାଟିରେ କାମୁଡି ଧରିଲା। ଚାଷୀ ଦଉଡିକୁ ଧୀରେଧୀରେ ଟାଣି ଟାଣି ତାକୁ ଉପରକୁ ଉଠାଇ ଆଣିଲା।

ଯେମିତି ଚାଷୀଟି ବାଘକୁ ଉପରକୁ ଉଠାଇଛି, ତଅଟ୍‌କିନା ବାଘ କହିଲା: ଚାଷୀ ଭାଇ, ମୋତେ ତୁମେ ଉଠାଇ ଯେଉଁ ଉପକାର କଲ, ତାହାକୁ ମୁଁ ଜୀବନରେ ଘୁଝି ପାରିବି ନାହିଁ। କିନ୍ତୁ ତମର ସେଇ ଉପକାର ବଦଳରେ ମୁଁ ତମକୁ ଖାଇବି।

ଚାଷୀ ବାଘ ମୁହଁରୁ ଏକଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲା। ସେ କହିଲା: ବାଘ, ତମେ ଅନ୍ୟାୟ କରୁଛ। ଏଥିନେଇ ମୁଁ ଜଙ୍ଗଲ ପଶୁପକ୍ଷୀମାନଙ୍କଠାରୁ ନ୍ୟାୟ ଚାହୁଁଛି। ବାଘ ମଧ୍ୟ ଚାଷୀଟି କଥା ଶୁଣିଲା। ସେମାନେ ନ୍ୟାୟ ପାଇଁ ଜଙ୍ଗଲର ବିଭିନ୍ନ ପଶୁ ପକ୍ଷୀଙ୍କୁ ଭେଟିଲେ।

ଚାଷୀଟି ଓ ବାଘ ପ୍ରଥମେ ଯାଇ ବଣରେ ବୁଲୁଥିବା ଏକ ବଳଦକୁ ହାବୁଡିଲେ। ଚାଷୀଟି ବଳଦକୁ ଅନୁନୟ କରି କହିଲା: ବଳଦ ବାପୁଡା, ଏ ବାଘକୁ ମୁଁ ପଙ୍କରୁ ଉଦ୍ଧାର କଲି, ତା ବଦଳରେ ସେ ମୋତେ ଖାଇବାକୁ କହୁଛି। ତମେ ମୋତେ ଉଚିତ୍ ନ୍ୟାୟ ପ୍ରଦାନ କର।

ବୁଢା ବଳଦର ତ ପୂର୍ବରୁ ମଣିଷ ଜାତି ଉପରେ ରାଗ ଥିଲା। ମଣିଷମାନେ ବଳଦକୁ ଯୁବକ ଅବସ୍ଥାରେ ଖଟେଇ ଖଟେଇ ରକ୍ତ ଶୋଷିବେ ଏବଂ ଯେତେବେଳେ ବୁଢା ହୋଇଯିବେ ସେମାନଙ୍କୁ ବିଦା କରିଦେବେ। ଏହି ସ୍ୱାର୍ଥପର ମଣିଷ ଉପରେ ବଳଦର ପ୍ରବଳ ରାଗ ଥିଲା। ତେଣୁ ବଳଦଟି ଡେରି ନ କରି ବାଘ ସପକ୍ଷରେ ରାୟ ଦେଲା।

ବଳଦ କହିଲା: ଯେହେତୁ ବାଘ ଏକ ହିଂସ୍ର ଜନ୍ତୁ ଏବଂ ମଣିଷ ତାର ଖାଦ୍ୟ। ତେଣୁ ଖାଦ୍ୟ ଓ ଖାଦକ ନ୍ୟାୟରେ ବାଘ ଚାଷୀଟିକୁ ଖାଇଲେ ତାର କିଛି ଦୋଷ ରହିବ ନାହିଁ। ବଳଦ ପାଖରୁ ଏହି ରାୟ ଶୁଣିବା ପରେ ବାଘ ଚାଷୀକୁ ଖାଇବାକୁ ଉଦ୍ୟତ ହେଲା।

କିନ୍ତୁ ଚାଷୀ କହିଲା: ଜଣେ ମାତ୍ର ନ୍ୟାୟ ପ୍ରଦାନକାରୀଙ୍କ ନ୍ୟାୟ ଯଥେଷ୍ଟ ନୁହେଁ। ଅନ୍ତତପକ୍ଷେ, ତିନି ଜଣଙ୍କୁ ଏ ସମ୍ପର୍କରେ ଭେଟିବା। ସେମାନେ ଯାହା ରାୟ ଦେବେ ତାହାହିଁ କାର୍ଯ୍ୟକାରୀ ହେବ।

ତେଣୁ ବାଘ ଓ ଚାଷୀ ଏହା ପରେ ଯାଇ ଗୋଟିଏ ଆମ୍ବ ଗଛକୁ ଘଟଣା ଜଣାଇଲେ। ଚାଷୀଟି ଆମ୍ବଗଛକୁ ତାର ଗୁହାରୀ ଜଣାଇଲା। ଆମ୍ବ ଗଛର ବି ମଣିଷ ଉପରେ ପୂର୍ବରୁ ରାଗ ଥିଲା। ଏହି ମଣିଷମାନେ ତା ଦେହରୁ ସବୁତକ ଆମ୍ବ ତୋଳିନେବେ ଏବଂ ଗଛଟି ବୁଢା ହୋଇ ଆଉ ଫଳ ନ ଦେଲେ ତାକୁ କାଟିଦେବେ। ତେଣୁ ଆମ୍ବ ଗଛଟି ମଧ୍ୟ ବାଘ ସପକ୍ଷରେ ରାୟ ଦେଲା।

ଏଥର ବାଘ ଚାଷୀଟିକୁ ଖାଇବାକୁ ଝାମ୍ପ ଦେଲା। କିନ୍ତୁ ଚାଷୀଟି ଶେଷଥର ପାଇଁ ଅନୁନୟ କରି ବାଘକୁ କହିଲା: ଆଉ ମାତ୍ର ଜଣେ ନ୍ୟାୟ ପ୍ରଦାନକାରୀଙ୍କୁ ଭେଟିବା। ସେ ଯାହା ରାୟ ଦେବେ ତାହାହିଁ ହେବ କାର୍ଯ୍ୟକାରୀ।

ଶେଷରେ ବାଘ ଓ ଚାଷୀଟି ଯାଇ ଏକ ବିଲୁଆ ନିକଟରେ ପହଞ୍ଚିଲେ। ବିଲୁଆ ଅତି ଚତୁର ଥିଲା। ବିଲୁଆଟି ନିକଟରେ ଉଭୟ ବାଘ ଓ ମଣିଷ କେହି ନିକର କି ପର ନଥିଲେ। ତେବେ ବାଘ ସପକ୍ଷରେ ରାୟ ଦେଲେ ବାଘ ମଣିଷକୁ ଖାଇଦେବ ଏବଂ ତାକୁ ଏଥିରେ କିଛି ଫାଇଦା ମିଳିବ ନାହିଁ। ବାଘ ମଣିଷକୁ ଖାଇଦେଲେ ଏକେତ ତାକୁ କିଛି ଖାଦ୍ୟ ମିଳିବ ନାହିଁ, ଦ୍ୱିତୀୟତଃ କୃତଘ୍ନ ବାଘଟି ମଣିଷକୁ ଖାଇ ସାରିବା ପରେ ତାକୁ ମଧ୍ୟ ଖାଇଦେଇ ପାରେ। ଅପରପକ୍ଷେ, ମଣିଷ ସପକ୍ଷରେ ରାୟ ଦେଲେ ବାଘ ରାଗିବ ଏବଂ ତାକୁ ଖାଇଦେବ। ତେଣୁ ସେ ଅତି ଚତୁରତା ଅବଲମ୍ବନ କଲା।

ବିଲୁଆ ସବୁ ଶୁଣିବା ପରେ ଉଭୟଙ୍କୁ ଚାହିଁ କହିଲା: ତମେ ଦୁହେଁ ଯାହା କହୁଛ ସତ ଯେ, ତେବେ କେମିତି ମୁଁ ବିଶ୍ୱାସ କରିବି?

ବିଲୁଆଟି ଏଥର ଚାଷୀ ଉଦ୍ଦେଶ୍ୟରେ କହିଲା: କେମିତି ବାଘ ସେ ପଙ୍କ ଗଡିଆରେ ଲାଗିଥିଲା ଏବଂ ତମେ କେମିତି ଦଉଡିରେ ଉଦ୍ଧାର କଲ ମୁଁ ତ ତାହା ଆଖିରେ ଦେଖିନି। ତେଣୁ ବିଶ୍ୱାସ କରିବି କେମିତି? ତେଣୁ ବାଘ କେମିତି ପଙ୍କରେ ଲାଖିଲା ଏବଂ ତମେ କେମିତି ଉଦ୍ଧାର କଲ, ତାହାକୁ ଆଉ ଥରେ କରି ମୋତେ ଦେଖାଅ।

ଏହା ଶୁଣି ବାଘଟି ସେହି ପଙ୍କ ଗଡିଆକୁ ଡେଇଁ ପଡିଲା। ଚାଷୀଟି ବାଘକୁ ଉଦ୍ଧାର କରିବା ପାଇଁ ପୂର୍ବ ପରି ତାର ଦଉଡି ପକେଇବାକୁ ଯାଉଥିଲା।

ବିଲୁଆ ଚଅଟକିନା ଚାଷୀକୁ ଅଟକାଇ କହିଲା: କିହୋ, ତମେ ମଣିଷ ଜାତି ନିଜକୁ ସବୁବେଳେ ଅତି ବୁଦ୍ଧିମାନ୍ ବୋଲାଅ, ମୋ ମତରେ କିନ୍ତୁ ତମେ ଅତି ବୋକା। ଆରେ ବାଘ ତ ପଙ୍କରେ ଲାଖିଯାଇଛି। ତମେ କ'ଣ ପୁଣି ତମର ମୃତ୍ୟୁକୁ ବରଣ କରି ଆଣିବ ନା କ'ଣ?

ଚାଷୀ ତାର ବୋକାମୀକୁ ବୁଝି ପାରିଲା। ସେ ଆଉ ଦଉଡି ପକେଇଲା ନାହିଁ। ଏହା ଫଳରେ ବାଘ ସେହି ପଙ୍କରେ ଛାଟିପିଟି ହୋଇ ନିଜର ଭୁଲ୍ ବୁଝି ପାରି ଖାଲି ଡହଳ ବିକଳ ହେବାକୁ ଲାଗିଲା। ତାକୁ ପଙ୍କରୁ ଉଦ୍ଧାର କରିବା ପାଇଁ ପୁଣି ଥରେ ଚାଷୀକୁ ନେହୁରା ହେଲା। ଚାଷୀ ତାର ନିଜର ଭୁଲ୍ ବୁଝି ପାରିଥିଲା। ତେଣୁ ଆଉ କେବେ ବି ବାଘକୁ ସେହି ପଙ୍କରୁ ଉଦ୍ଧାର କରିବାକୁ ଚାହିଁଲା ନାହିଁ।

ବିଲୁଆ ଚାଷୀକୁ କହିଲା: କିହୋ, ଚାଷୀ ଭାଇ ମୁଁ ତମକୁ ତ ଉଦ୍ଧାର କଲି, ମୋତେ କ'ଣ ଉପକାର ମିଳିବ? ଚାଷୀ ବିଲୁଆକୁ କୁକୁଡାଟିଏ ଆଣି ଦେଲା। ଏଣେ ବିଲୁଆର ଡବଲ୍ ଲାଭ। ବାଘ ମରିଯିବାକୁ ଆଉ ଅଳ୍ପ ସମୟ ଅଛି। ବାଘର ସୁଆଦିଆ ମାଂସ କଥା ଭାବିଭାବି ବିଲୁଆର ପାଟିରୁ ଲାଳ ଗଡି ପଡୁଥାଏ। ଦିନକ ପରେ ଯେମିତି ବାଘ ମରିଗଲା, ବିଲୁଆ ସପ୍ତାହେ ଧରି ବାଘ ମାଂସକୁ ଖାଇ ଖାଇ ଖାଲି ହାକୁଟି ମାରିଲା। ଚାଷୀ ଖୁସ୍, ବିଲୁଆ ଖୁସ୍। ବିଚରା ବାଘଟି ମଲା।







# ସର୍ପଗନ୍ଧା ଓ ଗୋପାଳ, ଗୋପାଳୁଣୀ

(ନବରଙ୍ଗପୁର, ଗଣ୍ଡ ଲୋକ କଥା)

ନବରଙ୍ଗପୁର ଜିଲ୍ଲାର ଝରିଗାଁ ବ୍ଲକ୍‌ରେ ରହିଛି ଏକ ମନୋରମ ପର୍ଯ୍ୟଟନସ୍ଥଳ; ଯାହାର ନାମ ସର୍ପଗନ୍ଧା। ଏହାକୁ ନେଇ ଯେଉଁ ଲୋକ କାହାଣୀ ରହିଛି ତାହା ଅତ୍ୟନ୍ତ ଶ୍ରୁତି ମଧୁର।

ଜଙ୍ଗଲରେ ଜଣେ ଗୋପାଳ ଓ ତାଙ୍କର ପତ୍ନୀ ଗୋପାଳୁଣୀ ରହୁଥିଲେ। ସେମାନେ ସହସ୍ରାଧିକ ଗାଈ ରଖିଥିଲେ। ଗୋପାଳଜଣକ ଭାରି ପରିଶ୍ରମୀ। ଦିନ ତମାମ୍ ସେ ଜଙ୍ଗଲରେ ଗାଈମାନଙ୍କୁ ସେବା ଯତ୍ନ କରୁଥିବ। ଗୋପାଳୁଣୀ ମଧ୍ୟ ସ୍ୱାମୀ ସାଙ୍ଗରେ ଜଙ୍ଗଲରେ

ଗାଈମାନଙ୍କର ଦେଖାଶୁଣା କରୁଥିବ। ଗୋପାଳ, ଗୋପାଳୁଣୀ କ୍ଷୀର ବିକି ବେଶ୍ ଆରାମରେ ଦିନ କାଟୁଥାନ୍ତି।

ଗୋପାଳ ଗାଈଗୁଡ଼ିକୁ ଦୁହିଁ ସାରି ଗୋପାଳୁଣୀ ହାତରେ କ୍ଷୀରତକ ଦେଇ ଘରକୁ ପଠାଏ ଏବଂ ସେ ଗାଈ ଗୋଠରେ ରହେ। ସବୁବେଳେ ଗୋପାଳୁଣୀ କ୍ଷୀର ନେଇ ଜଙ୍ଗଲ ମଧ୍ୟ ଦେଇ ଗୃହକୁ ଫେରେ। ସେହି ଜଙ୍ଗଲରେ ଜଣେ ଭୟଙ୍କର ରାକ୍ଷସ ରହୁଥିଲା। ଦିନେ କ'ଣ ହୋଇଛି ନା, ଗୋପାଳୁଣୀ କ୍ଷୀର ନେଇ ଯାଉଥିବାବେଳେ ରାକ୍ଷସ ବାହାରିଲା ଏବଂ ଗୋପାଳୁଣୀକୁ ଅଟକାଇ ତାର କ୍ଷୀରତକ ପିଇଦେଲା। ଏମିତି ସବୁଦିନେ ରାକ୍ଷସ ଗୋପାଳୁଣୀ ପାଖରୁ କ୍ଷୀରତକ ପିଇ ଦେଉଥିଲା।

ପ୍ରତିଦିନ ଗୋପାଳୁଣୀ ସେହି ବାଟ ଦେଇ କ୍ଷୀର ନେଇ ଘରକୁ ଫେରୁଥିବାବେଳେ ରାକ୍ଷସଟି ତାର ବାଟ ଓଗାଳି ସବୁତକ କ୍ଷୀର ପିଇ ଦେଉଥିଲା। ରାକ୍ଷସ ଏକ ସର୍ପ ରୂପ ଧାରଣ କରି ଗୋପାଳୁଣୀଠାରୁ ସବୁ କ୍ଷୀର ପିଇଦେଇ ତତ୍‌କ୍ଷଣାତ୍ ଉଭାନ୍ ହୋଇଯାଏ। ଏମିତି ଦିନ ପରେ ଦିନ ବିତିଗଲା। ଦିନେ ଗୋପାଳୁଣୀ ଗୋପାଳ ଆଗରେ ସବୁ ଘଟଣା ବର୍ଣ୍ଣନା କଲା। ଗୋପାଳ ଶୁଣି ବହେ ଚିନ୍ତା କଲା। କିପରି ସେହି ରାକ୍ଷସକୁ ମାରିବ ଚିନ୍ତା କଲା।

ଦିନେ ଗୋପାଳ ତା ସ୍ତ୍ରୀକୁ ନ ପଠେଇ ସେହି ଜଙ୍ଗଲ ବାଟ ଦେଇ ନିଜେ କ୍ଷୀର ନେଇକି ଯିବ ବୋଲି ଚିନ୍ତା କଲା। ଗୋପାଳ ଏକ ନାରୀ ବେଶ ଧାରଣ କଲା ଓ କ୍ଷୀର ନେଇ ସେହି ଜଙ୍ଗଲ ବାଟ ଦେଇ ଗଲା। ଏହି ସମୟରେ ରାକ୍ଷସ ଆସି ବାଟରେ ପହଞ୍ଚିଲା। ସଙ୍ଗେସଙ୍ଗେ ସର୍ପ ରୂପ ଧାରଣ କରି କ୍ଷୀରତକ ପିଇବାକୁ ଆଗେଇ ଆସିଲା। ଯେତେବେଳେ ସାପ କ୍ଷୀରତକ ପିଇବାକୁ ଉଦ୍ୟମ କରିଛି, ଠିକ୍ ସେହି ସମୟରେ ନାରୀ ବେଶଧାରୀ ଗୋପାଳ ଏକ ଖଣ୍ଡାରେ ସାପଟିକୁ ଚୋଟପରେ ଚୋଟ ମାରି ଚାଲିଲା। ସେହି ସାପଟି ସାତ ଖଣ୍ଡ ହୋଇ ସଙ୍ଗେସଙ୍ଗେ ପଥର ପାଲଟିଗଲା।

ସେହିଦିନଠାରୁ ସେହି ସ୍ଥାନର ନାମ ସର୍ପଗନ୍ଧା ହୋଇଛି। ବର୍ତ୍ତମାନ ଏଠାରେ ଏକ ସର୍ପାକୃତିର ପଥର ରହିଛି ଯାହା ସାତ ଭାଗରେ ବିଭକ୍ତ। ଝରିଗାଁରେ ଏପରି ଏକ ପ୍ରାକୃତିକ ସୌନ୍ଦର୍ଯ୍ୟଭରା ସ୍ଥାନ ରହିଛି ଯାହା ସମ୍ପର୍କରେ ଜିଲ୍ଲାରେ ଅଧିକାଂଶ ଲୋକେ ଜାଣି ନଥିବେ।





# ଦୁଇ ଠକଙ୍କ କାହାଣୀ ( ୧ )

(ନବରଙ୍ଗପୁର, ଭତରା ଲୋକ କଥା)

ଗୋଟିଏ ଗାଁରେ ଦୁଇ ଜଣ ସାଙ୍ଗ ରହୁଥିଲେ। ଦୁହେଁ ସାଂଘାତିକ୍ ଠକ ଓ ଅଳସୁଆ ଥିଲେ। କିଛି କାମଧାମ ନ କରି କାହାକୁ ଠକିଭଣ୍ଡି ଚଳିବା ଛଡା ସେମାନେ ଆଉ କିଛି ଜାଣି ନଥିଲେ। ଅନେକ ସମୟରେ କିଛି ନକରି ଖାଲି ଶୋଇ ରହୁଥିଲେ। ଫଳରେ ସେମାନଙ୍କ ସ୍ତ୍ରୀମାନେ ସେମାନଙ୍କ ଉପରେ ବିରକ୍ତି ହେଉଥିଲେ। ଦିନେ ସେମାନଙ୍କ ସ୍ତ୍ରୀମାନେ ଅଧିକ ଅସନ୍ତୋଷ ପ୍ରକାଶ କଲେ ଏବଂ କହିଲେ: ଯଦି କାମଧାମ ନ କରି ରୋଜଗାର ନକର ତେବେ ଆମେ ତମକୁ ଛାଡି ବାପଘର ଚାଲିଯିବୁ। ସ୍ତ୍ରୀମାନଙ୍କର ଏହି ଉକ୍ତି ଶୁଣି ଦୁଇ ଠକ

ସନ୍ଧ୍ୟାରେ ଘରକୁ ମଇଁଷି ନେଇ ଫେରିବ। ବେଶ୍ ଆରାମ୍ କରିବ। କିନ୍ତୁ ମଇଁଷି କୋଉ ଠକର ଏହି ଯୋଜନାକୁ ପୂରଣ କରେଇ ଦିଏକି? ଓଲେଇ ମଇଁଷି ଗୋଠରୁ ଖୋଲା ହେବାଠାରୁ ଖାଲି ଏଣେତେଣେ ଦୌଡିବାରେ ଲାଗିଲା। ଠକ ମଇଁଷି ପଛରେ ଦଉଡି ଦଉଡି ହାଲିଆ ହୋଇପଡିଲା। ଦିନ ତମାମ୍ ମଇଁଷି ଖାଲି ଦଉଡିବାକୁ ଲାଗିଲା। କେବେବି ସ୍ଥିର ହୋଇ ଚରିଲା ନାହିଁ କି ଠକ ଗଛମୂଳେ ଆରାମ୍ କରିପାରିଲା ନାହିଁ।

ଏଣେ ଦ୍ୱିତୀୟ ଠକ କୁଣ୍ଡରେ ପାଣି ପୂରୋଉଥାଏ। ଚାଲାକ୍ ସାଉକାର୍ କୁଣ୍ଡର ତଳେ ଏକ ଛୋଟ କଣାଟିଏ କରି ଦେଇଥାଏ। ଠକ ଯେତେ ବି ପାଣି ପୂରାଉଥାଏ, କୁଣ୍ଡ ପୂର୍ଣ୍ଣ ହେଉ ନଥାଏ। ଦିନ ସାରା ପାଣି ବୋହି ବୋହି ଠକ କ୍ଳାନ୍ତ ହୋଇ ପଡିଲା, କିନ୍ତୁ କୁଣ୍ଡ ବୋଝେ ହେଲା ନାହିଁ।

ଏମିତି ଭାବେ ଦୁଇ ଠକ ସନ୍ଧ୍ୟାରେ କ୍ଳାନ୍ତ ହୋଇ ଫେରିଲେ ଏବଂ ସେଠି ଆଉ ରହିବାକୁ ଇଚ୍ଛା କଲେନି। ସେମାନେ ଏଠାରୁ ଚାଲିଯିବାକୁ ଯୋଜନା କଲେ। ଦୁହେଁ ପୁଣି ଅନ୍ୟ ଏକ ଗାଁକୁ ଗଲେ। ସେଠାରେ ଗୋଟିଏ ଧନୀ ସାଉକାର୍ ପରିବାର ବୃଦ୍ଧଟିଏ ମରି ଯାଇଥାନ୍ତି। ଦୁଇ ଠକଙ୍କ ମୁଣ୍ଡକୁ ଏକ ଅଭିନବ ଯୋଜନା ପହଞ୍ଚିଲା। ଜଣେ ଯାଇ ସେହି ଶୋକାକୁଳ ସାଉକାର ପରିବାରରେ ପହଞ୍ଚି ଅନ୍ୟମାନଙ୍କ ସହ ମିଶି କାନ୍ଦିବାକୁ ଲାଗିଲା। ଅନ୍ୟମାନେ ଏହା ଦେଖି ଆଶ୍ଚର୍ଯ୍ୟ ପ୍ରକଟ କଲେ। ଠକଟି ସେମାନଙ୍କୁ କହିଲା: ଏ ଯେଉଁ ଲୋକଟି ମରିଗଲେ, ହିସାବରେ ସେ ମୋର କେକେ ହେବେ। ସେ ଆମ ଗାଁରେ ଆମକୁ ଛାଡି ଏଠାକୁ ଚାଲି ଆସିଥିଲେ। ତେଣୁ ମୁଁ ତାଙ୍କର ଅଂଶ ଏବଂ ତାଙ୍କୁ ସୁଦ୍ଧ ହେବି। ଏହା ପରେ ଶବକୁ ନେଇ ପୋତି ଦେଇ ଆସିଲେ। ଠକ ସେମାନଙ୍କ ସହ ମିଶି ଶୁଦ୍ଧ ହେଲା। ଏହାର କିଛି ଦିନ ପରେ ଠକ ଅନ୍ୟ ଭାଇମାନଙ୍କୁ ତାର ଜମି ଓ ଟଙ୍କା ସୁନା ଭାଗ ଦାବି କଲା। ଏହା ଶୁଣି ଭାଇମାନେ ଭାରି ରାଗିଗଲେ। ଠକକୁ କହିଲେ: ତମେ କିଏ ଆମେ ଜାଣିନୁ, ତମେ ଆସି ଜୋର ଜବରଦସ୍ତ ସୁଦ୍ଧି ହେଲ ଏବଂ ଏବେ କହୁଛ ସମ୍ପତ୍ତିରେ ତମର ଭାଗ ଅଛି। ତମେ ନିଶ୍ଚୟ ଜଣେ ଠକ ଏବଂ ତମ ଉପରେ ଉତ୍ତମ ମଧ୍ୟମ ନଦେଲେ ତମେ ବାଟକୁ ଆସିବ ନାହିଁ। ଏହା କହି ଭାଇମାନେ ଠକଟିକୁ ଠେଙ୍ଗାବାଡି ଧରି ମାରଧର କରିବାକୁ ଯାଉଥିଲେ। ଠକଟି ସେମାନଙ୍କୁ ଅଟକାଇ କହିଲା: ଭାଇମାନେ ତମେମାନେ ତ ମୋତେ ମାରିବାକୁ ଯାଉଛ। ତେବେ ମୁଁ ଗୋଟିଏ କଥା କହୁଛି, ମନ ଦେଇ ଶୁଣ। ସେହି ଅନୁସାରେ କାମ କର। ମୁଁ ତମର ଭାଇ କି ନୁହେଁ, ତମେମାନେ ଯାଇ ପୋତାଯାଇଥିବା ଶବକୁ ପଚାର। ଗୋଟା କଥା କର। ଆଜି ରାତିରେ ଶବ ନିକଟକୁ ଯିବା ଏବଂ ତାଙ୍କୁ ମୋ ପରିଚୟ ସମ୍ପର୍କରେ ପଚାରିବା। ରାତିବେଳେ ତ ଶବମାନେ ପ୍ରକଟ ହେଉଥିବେ। ତେଣୁ ଆଜି ରାତିରେ ଯିବ।

ଠକଟି ଏହି ଯୋଜନା କରି ଏଣେ ଅନ୍ୟ ଠକକୁ ସମସ୍ତ କଥା ବର୍ଣ୍ଣନା କଲା। ତାଙ୍କ ଯୋଜନାମତେ ଆଜି ରାତିରେ ଅନ୍ୟ ଠକଟି ସେହି ଗାତ ଖୋଳି ନିଜେ ପୋତି ହୋଇ

ରହିବ। ଯେତେବେଳେ ଏମାନେ ସେହି ଗାତରେ ପୋତାଯାଇଥିବା ଶବ ନିକଟକୁ ଯାଇ ପଚାରିବେ, ଠକଟି ଗାତ ଭିତରୁ ଥାଇ ଉତ୍ତର ଦେବ। ବଢିଆ ଆଇଡିଆ।

ଠକର କଥା ଅନୁଯାୟୀ ଭାଇମାନେ ରାତିରେ ଯାଇ ଶବ ନିକଟରେ ପହଞ୍ଚିଲେ। ଶବଟି ଉଦ୍ଦେଶ୍ୟରେ ଭାଇମାନେ ପଚାରିଲେ: ବାପା, ଏହି ଲୋକଟି ପ୍ରକୃତରେ କିଏ?

ଗାତ ମଧ୍ୟରୁ ଥାଇ ଶବଟି ଉତ୍ତର ଦେଲା: ମୂର୍ଖ, ଏ ହେଉଛନ୍ତି ତୁମର ଜଣେ ଭାଇ।

ଭାଇମାନେ ପୁଣି ପଚାରିଲେ: ଏ ଲୋକଟା ଆମ ସମ୍ପତ୍ତିର ଭାଗ ନେବାକୁ କହୁଛି।

ଶବ କହିଲା: ମୂର୍ଖ, ଭାଇ ଭାଗ ତାକୁ ଯେମିତି ହେଲେ ବି ଦେଇ ଦିଅ, ନହେଲେ ମୁଁ ତମକୁ ଶାନ୍ତିରେ ରଖେଇ ଦେବିନି।

ଶବର ଏହି କଥା ଶୁଣି ଭାଇମାନେ ଭୟରେ ରାଜି ହୋଇଗଲେ। ସେମାନେ ଘରକୁ ଫେରିଲେ। ପରଦିନ ଗାଁରେ ଭାଇ ଭାଗ ବସିଲା। ଠକ ଭାଗରେ ପଚାଶ ମାଣ ସମ୍ପତ୍ତି, କୋଡିଏ ତୋଳା ସୁନା ଓ ଅନ୍ୟାନ୍ୟ ଧନସମ୍ପତ୍ତି ପ୍ରଚୁର ଭାଗ ବାବଦକୁ ମିଳିଲା। ଠକ ଏତେ ସମ୍ପତ୍ତି ଦେଖି ଆନନ୍ଦିତ ହୋଇଗଲା। ଠକଟି ସବୁ ସମ୍ପତ୍ତିକୁ ବିକି ଟଙ୍କାତକ ନେଇ ଅନ୍ୟ ଠକ ନିକଟରେ ପହଞ୍ଚିଲା। ଦୁହେଁ ସେଥିରୁ ଦୁଇ ଭାଗ କରି ନିଜନିଜ ଘରକୁ ଫେରିଲେ।

ଘରକୁ ଫେରିଲା ପରେ ଏତେ ଟଙ୍କା, ସୁନା ଦେଖି ସେମାନଙ୍କ ସ୍ତ୍ରୀ ଆନନ୍ଦରେ ନାଚି ଉଠିଲେ। ସ୍ତ୍ରୀମାନେ ସେମାନଙ୍କ ସ୍ୱାମୀଙ୍କ ପାଇଁ ସୁସ୍ୱାଦୁ ଭୋଜନ କରି ଗେହ୍ଲେଇ ହୋଇ ସ୍ୱାମୀଙ୍କୁ ଭାରି ଆଦର ସମ୍ମାନ କଲେ। ସେହିଦିନଠାରୁ ଦୁଇ ଠକ ବେଶ୍ ଆରାମରେ ସେଇ ଗାଁରେ ଚଳିଲେ ଏବଂ ଦୁହେଁ ରାତାରାତି ସାଉକାର ପାଲଟିଗଲେ। ଲୋକେ ଏହା ଦେଖି ଭକୁଆ ହୋଇଗଲେ।







# ଦୁଇ ଠକଙ୍କ କାହାଣୀ (୨)

(ନବରଙ୍ଗପୁର, ଭତରା ଲୋକ କଥା)

ଗୋଟିଏ ଗାଁରେ ଦୁଇ ଜଣ ଠକ ଥିଲେ। ଜଣକ ନାଁ ଯୋଗ ଠକ ଓ ଆଉ ଜଣକ ନାଁ ମହା ଠକ। ଦୁହେଁ ପରସ୍ପରକୁ ଖାଲି ଠକିବାରେ ବ୍ୟସ୍ତ ଥିଲେ।

ଦିନେ ଯୋଗଠକ ବ୍ୟାଗ୍‌ରେ କିଛି ଟଙ୍କା ନେଇକି ଯାଉଥିଲା। ବ୍ୟାଗରେ ବନ୍ଧୁଗୁଡ଼ିଏ କଏନ୍‌ ଥିବାରୁ ଝଣଝଣ ଶବ୍ଦ ହେଉଥିଲା। ବାଟରେ ଯାଉଥିବାବେଳେ ମହା ଠକ ଦେଖା ହେଲା। ମହା ଠକ ଯୋଗ ଠକକୁ କହିଲା: କିହୋ, ଭାଇ ବ୍ୟାଗରେ କ'ଣ ଟଙ୍କା ଫଙ୍କା ନେଇକି ଯାଉଛ ନା କ'ଣ?

ଯୋଗ ଠକ କହିଲା: କାହିଁ, ନାଇତା ଏଇ ପରିବା, ଫରିବା କିଛି ନେଇକି ଯାଉଛି।

ଯୋଗ ଠକ ମିଛ କହୁଛି ବୋଲି ମହା ଠକ ଜାଣି ପାରିଲା। ତେଣୁ ମହା ଠକ ଯୋଗ ଠକକୁ ଅନୁସରଣ କଲା। ଯୋଗ ଠକ ଯାଉ ଯାଉ ବାଟରେ ତାକୁ ନିଦ ମାଡିଲା। ସେ ଏକ ଗଛ ମୂଳେ ଶୋଇବାକୁ ଇଚ୍ଛା କଲା। ତେବେ ମହା ଠକର ଭୟ ଯୋଗୁଁ ସେ ଟଙ୍କାତକ ଗଛ ଉପର ଡାଳରେ ବାନ୍ଧି ଦେଇ ଆରାମରେ ଶୋଇଲା। ମହା ଠକ ଅନୁସରଣ କରୁଥିଲା। ଯେମିତି ଯୋଗ ଠକ ନିଦରେ ଘୁଙ୍ଗୁଡି ମାରିବାକୁ ଆରମ୍ଭ କଲା, ମହା ଠକ ଗଛକୁ ଚଢି ଟଙ୍କାତକ ନେଇ ଆସିଲା।

ଯୋଗ ଠକ ଉଠିକି ଦେଖିଲା ବେଳକୁ ତା ଟଙ୍କା ବ୍ୟାଗ୍ ନାହିଁ। ଏହା ମହା ଠକର କାମ ବୋଲି ଯୋଗ ଠକ ଜାଣି ପାରିଲା। ତେଣୁ ସେ ମହା ଠକକୁ ଅନୁସରଣ କଲା। ବହୁ ଦୂର ଯାଇ ଯାଇ ଦେଖିଲା ବେଳକୁ ମହା ଠକ ଏକ ପୋଖରୀ କୂଳରେ ଆରାମରେ ଶୋଇଛି। ନିଘୋଡ ନିଦରେ ଘୁଙ୍ଗୁଡି ମାରୁଛି। ଯୋଗ ଠକ ପ୍ରଥମେ ତାର ଆଖପାଖ ଦେଖିଲା, କେଉଁଠି ବ୍ୟାଗ୍ ନଥିଲା। ସେ ଦେଖିବାକୁ ପାଇଲା, ମହା ଠକର ଗୋଡ ଓଦା ହୋଇଛି। ତେଣୁ ତାର ଅନୁମାନ ହେଲା ଯେ, ମହା ଠକ ନିଶ୍ଚୟ ଟଙ୍କା ମୁଣାକୁ ପୋଖରୀ ପାଣି ମଧ୍ୟରେ ଲୁଚାଇଥିବ। ଯୋଗ ଠକ ପୋଖରୀ ମଧ୍ୟକୁ ପଶି ପାଣି ପଙ୍କ ମଧ୍ୟରେ ଉଣ୍ଡାଳିବାରୁ ତା ଟଙ୍କା ବ୍ୟାଗ୍ ତାକୁ ମିଳି ଗଲା। ତେଣୁ ସେ ଖୁସି ମନରେ ଟଙ୍କାତମ ନେଇ ଆସି ପୁଣି ଅନ୍ୟତ୍ର ଯାଉଥିଲା। ବାଟରେ ଏକ ମଶାଣି ପଡିଲା। ସେଠାରେ ତାକୁ ପୁଣି ନିଦ ମାଡିଲା। ତେଣୁ ସେ ସେଠାରେ ଶୋଇଲା। ମଶାଣି ପାଉଁଶରେ ଟଙ୍କା ମୁଣାକୁ ଲୁଚାଇ ସେଠାରେ ଶୋଇ ପଡିଲା।

ଏଣେ ମହା ଠକ ନିଦରୁ ଉଠି ପୋଖରୀ ପାଣିରେ ଦେଖିଲା ବେଳକୁ ବ୍ୟାଗ୍ ଗାଏବ୍। ତାକୁ ଆଉ ଜାଣିବାକୁ ବାକି ନଥିଲା। ଏହା ଯୋଗ ଠକର କାମ ବୋଲି ସେ ନିଶ୍ଚିତ ହୋଇ ଗଲା। ତେଣୁ ଆଉ କାଳ ବିଳମ୍ବ ନ କରି ମହା ଠକ ଯୋଗ ଠକକୁ ପୁଣି ଅନୁସରଣ କଲା। ଯାଇ ଯାଇ ମହା ଠକ ସେ ମଶାଣିରେ ପହଞ୍ଚିଲା। ସେଠି ପହଞ୍ଚି ଦେଖିଲା ବେଳକୁ ଯୋଗ ଠକ ମହା ଆରାମରେ ମଶାଣିରେ ଶୋଇଛି। ମହା ଠକ ପ୍ରଥମେ ଟଙ୍କା ବ୍ୟାଗଟିକୁ ଖୋଜିଲା, କେଉଁଠି ପାଇଲା ନାହିଁ। ଯୋଗ ଠକର ହାତ, ଗୋଡରେ ମଶାଣି ପାଉଁଶ ଲାଗି ଥିବାର ମହା ଠକ ଦେଖିଲା। ସେ ଅନୁମାନ କଲା, ଯୋଗ ଠକ ନିଶ୍ଚୟ ମଶାଣି ପାଉଁଶରେ ଟଙ୍କା ବ୍ୟାଗକୁ ଲୁଚାଇଥିବ। ତେଣୁ ମହା ଠକ ମଶାଣି ପାଉଁଶ ମଧ୍ୟରେ ବ୍ୟାଗ୍‌କୁ ଉଣ୍ଡାଳିଲା। ପାଉଁଶ ଭିତରୁ ବ୍ୟାଗ୍‌ଟିକୁ ପାଇ ମହା ଠକ ଅତି ଆନନ୍ଦ ମନରେ ସେଠାରୁ ଚାଲି ଯାଉଥିବାବେଳେ ଯୋଗ ଠକର ନିଦ ଭାଙ୍ଗି ଗଲା। ଯୋଗ ଠକ ମହା ଠକକୁ ଦେଖି ରାଗରେ ପାଚିଗଲା। ତେବେ ମହା ଠକ ତ ବହୁତ ଚାଲାଖ ଥିଲା। ସେ ଦେଖିଲା ଯୋଗ ଠକ ବି ବହୁତ ଚତୁର ଏବଂ ସେ ନିଜେ ବି ବହୁତ ଚତୁର। ଦୁହେଁ ଯଦି ମିଶି ଯାଆନ୍ତି ତେବେ ଦୁନିଆରେ ଏମିତି କୌଣସି ଶକ୍ତି ନାହିଁ ତାଙ୍କୁ ପରାସ୍ତ କରିଦେବ। ଦୁହେଁ ମିଶି ଠକାମୀ କଲେ ବେଶ୍

ଭଲ ଦି ପଇସା ରୋଜଗାର କରି ହେବ ବୋଲି ମହା ଠକ ଭାବିଲା । ତେଣୁ ସେ ତା ପକ୍ଷରୁ ଯୋଗ ଠକ ସହିତ ସନ୍ଧି କରିବାକୁ ରାଜି ହୋଇଗଲା । ଦୁହେଁ ବନ୍ଧୁତ୍ୱର ହାତ ବଢାଇ ମୈତ୍ର ହେଲେ ।

ଯୋଗ ଠକ ଓ ମହା ଠକ ମିତ୍ର ହେଲା ପରେ ସେମାନେ କେମିତି ଠକି ଭଣ୍ଡି ଅଧିକ ରୋଜଗାର କରିବେ ସେଥିନେଇ ଚିନ୍ତା କଲେ ।

ଦିନେ ମହା ଠକ ଏକ ବିଷ ଦାନ୍ତ ନଥିବା ସାପଟିଏ ଆଣିଲା । ଯୋଗ ଠକକୁ କହିଲା: ଏହି ସାପକୁ ନେଇ ଆମେ ଟଙ୍କା ରୋଜଗାର କରିବା ।

ଦିନେ ମହା ଠକ ଜଣକ ଘର ମଧ୍ୟକୁ ସେହି ବିଷ ଦାନ୍ତହୀନ ସାପଟିକୁ ଛାଡି ଦେଇ ଚିତ୍କାର କରିବାକୁ ଲାଗିଲା । ଚତ୍କାର ଶୁଣି ସେଠାରେ ଯୋଗ ଠକ ହାଜର ହୋଇଗଲା । ଘର ମଧ୍ୟରେ ସାପ ପଶି ଯାଇଥିବାରୁ ଘର ଲୋକେ ଭୟଭୀତ ହୋଇ ପଡିଲେ। ଏଣେ ମହା ଠକ ସାପଟିକୁ କେମିତି ଧରିହେବ ସେଥିନେଇ ବ୍ୟସ୍ତ ହୋଇ ପଡିଲା । ସେଠାରେ ଯୋଗ ଠକ ଉପସ୍ଥିତ ଥିଲା । ସେ କହିଲା: ମୋତେ ଦୁଇ କୋଡି ଟଙ୍କା ଦେଲେ ମୁଁ ସାପଟିକୁ ଧରି ପାରିବି । ଘର ମାଲିକ ସଙ୍ଗେସଙ୍ଗେ ଦୁଇ କୋଡି ଟଙ୍କା କାଢି ଯୋଗ ଠକକୁ ଦେଲା । ଯୋଗ ଠକ ତା ପରେ ସାପଟିକୁ ଧରି ନେଇ ସେଠାରୁ ଚାଲିଗଲା । ଏହା ପରେ ଦୁହେଁ ଯାଇ ଏକତ୍ର ହେଲେ। ଟଙ୍କାତକ ଭାଗ ବଣ୍ଟରା କରି ନେଲେ।

ଏମିତି ସବୁ ଦିନେ ଦୁଇ ଠକ ଅନ୍ୟ ଘରେ ସେହି ବିଷ ଦାନ୍ତହୀନ ସାପଟିକୁ ଛାଡି ଦେଇ ବେଶ୍ ଦି ପଇସା ଭଲ ରୋଜଗାର କରିବାକୁ ଲାଗିଲେ। ସବୁ ଦିନ ତ ଚୋର ଘର ଅନ୍ଧାର ନଥାଏ ।

ଦିନେ ସେହି ଗାଁର ଜଣଙ୍କ ଘରକୁ ସତ ସତିକା ଏକ ବିଷଧର ସାପ ପଶି ଯାଇଥିଲା । ସମସ୍ତେ ଯାଇ ଯୋଗ ଠକକୁ ଧରି ଆଣିଲେ। ମହା ଠକ ବି ସାଥୀରେ ଆସିଲା । ବିଷଧର ସାପକୁ ଦେଖି ଯୋଗ ଠକ ଭୟରେ ଥରି ଉଠିଲାଣି। କିନ୍ତୁ ଉପରକୁ କିଛି କହି ପାରୁ ନଥାଏ। ସେ ଦେଖିଲା ସେ ଏକୁଟିଆ କାହିଁକି ସାପ କାମୁଡାରେ ମରିବ, ଏଥିରେ ମହା ଠକକୁ ବି ଭାଗିଦାରି କରିବ। ଯୋଗ ଠକ ସେ ଘର ଲୋକଙ୍କୁ କହିଲା: ମୋ ସାଥୀରେ ସେହି ଲୋକଟି (ମହା ଠକ) ରହିଲେ ଯାଇ ସାପଟି ସହଜରେ ଧରା ପଡିବ। ସମସ୍ତେ ମହା ଠକକୁ ବାଧ୍ୟ କରି ଯୋଗ ଠକ ସାଙ୍ଗରେ ଘର ମଧ୍ୟକୁ ସାପ ଧରିବାକୁ ପଠେଇ ଦେଲେ। ବିଷଧର ସାପଟିକୁ ଧରିବାକୁ ଯାଇ ଦୁଇ ଜଣଯାକ ସାପ ଚୋଟରେ ମଲେ। ଦୁଇ ଜଣଯାକ ଠକାମୀର ଫଳ ପାଇଲେ।





# କନ୍ଧ ବୁଢା ଓ ମହାବଳ ବାଘ

(ରାୟଗଡ଼ା, ଡ଼ୁଙ୍ଗରିଆ କନ୍ଧ ଲୋକ କଥା)

କୋରାପୁଟର ଏକ ଜଙ୍ଗଲରେ ଜଣେ କନ୍ଧ ବୁଢା ବାସ କରୁଥାଏ। ସେ ଜଙ୍ଗଲରୁ କାଠ ହାଣି ଚଳେ। ପ୍ରତିଦିନ ଟାଙ୍ଗିଆ ଧରି ଜଙ୍ଗଲକୁ ଯାଏ। ଦିନେ କାନ୍ଧରେ ଟାଙ୍ଗିଆ ପକେଇ କନ୍ଧ ବୁଢା ଜଙ୍ଗଲକୁ ଯାଉଥାଏ। ବାଟରେ ଏକ ମହାବଳ ବାଘ ଦେଖି କନ୍ଧ ବୁଢା ଚମ୍‌କି ପଡ଼ିଲା। କନ୍ଧ ବୁଢା ମଧ୍ୟ ଆଶ୍ଚର୍ଯ୍ୟ ହେଉଥାଏ, ଏତେ ନିକଟରେ ଥାଇ ମଧ୍ୟ ବାଘ ତାକୁ ଖାଉନାହିଁ କାହିଁକି? ଜାଣୁ ଜାଣୁ ଜଣାଗଲା ଯେ, ବାଘଟି ଅନ୍ଧ ଥିଲା। ବାଘଟି ଅନ୍ଧ ହେଲେ

ମଧ୍ୟ ତାର ଘ୍ରାଣ ଶକ୍ତି ପ୍ରଖର ଥିଲା। ସେ ଶୁଂଘି ଶୁଂଘି ମଣିଷର ବାସ୍ନା ବାରିପାରିଲା। କହିଲା: କିଏ, ମଣିଷ ମୋ ଜଙ୍ଗଲକୁ ଆସିଛି?

କନ୍ଧ ବୁଢା ଭୟରେ ସବୁ ସତ ମାନିଗଲା। କହିଲା: ବାଘ ରାଜା, ମୋତେ କ୍ଷମା କରନ୍ତୁ। ମୁଁ କେବଳ ଜଙ୍ଗଲକୁ କିଛି କାଠ ସଂଗ୍ରହ କରିବାକୁ ଆସିଛି। ତେଣିକି ଆପଣ ମୋତେ ମାରିଲେ ମାରିବେ, ରଖିଲେ ରଖିବେ। ବାଘଟି ପ୍ରକୃତରେ ବହୁତ ଭଲ ଓ ସରଳ ଥିଲା। ସେ କହିଲା: ହଉ, ତୁ ତ ଭଲ ଲୋକ ଭଳି ଜଣାପଡୁଛୁ। ତେଣୁ କାଠ କାଟିସାରି ମୋ ନିକଟକୁ ଆସିବୁ।

କନ୍ଧ ବୁଢା କାଠ କାଟିସାରି ବାଘ ନିକଟକୁ ଆସିଲା।

ବାଘ କହିଲା: ବୁଝିଲୁ, କନ୍ଧ ତୁ ଯଦି ମୋର ଗୋଟିଏ ଉପକାର କରିପାରନ୍ତୁ, ତେବେ ମୁଁ ତୋତେ ଜୀବନ ସାରା ବସେଇକି ଖୁଆନ୍ତି।

କନ୍ଧ ବୁଢା କହିଲା: ମହାରାଜ, ମୁଁ ଆପଣଙ୍କର କି ସେବା କରି ପାରିବି?

ବାଘ କହିଲା: ତୁ ଯଦି ମୋର ଆଖି ଯୋଡିକ ଭଲ କରି ଦିଅନ୍ତୁ,

କନ୍ଧ ବୁଢା କହିଲା: ହଜୁର, ମୁଁ ଚେରମୂଳି ପ୍ରୟୋଗ କରି ଆଖି ଭଲ କରି ଦେବି, ଆଜ୍ଞା।

ଏହା ପରେ କନ୍ଧ ବୁଢା ବାଘକୁ ସାଙ୍ଗରେ ନେଇ ଅଗନା ଅଗନି ବନସ୍ତକୁ ଗଲା। ସେଠାରେ ଚେରମୂଳି ସଂଗ୍ରହ କରି ତାହାର ରସକୁ ବାଘ ଆଖିରେ ଲେପନ କରିବାରୁ ବାଘକୁ ପୁଣି ସବୁ ଦିଶିଲା। ବାଘ ମହା ଆନନ୍ଦରେ କନ୍ଧ ବୁଢାକୁ କୁଣ୍ଢେଇ ପକେଇଲା।

ସେହିଦିନଠାରୁ ବାଘ, କନ୍ଧ ବୁଢାକୁ ବସେଇକି ତାର ଖାଇବା, ପିଇବା ସମସ୍ତ ଦାୟିତ୍ୱ ନେଲା। ବାଘ ବଣରୁ ବଡିଆ ବଡିଆ ଶିକାର କରି ଆଣିଲା। କନ୍ଧ ବୁଢା ହରିଣ, କୁଟ୍ରା, ବାର୍ହା, ସମ୍ବର ଆଦି ମାଂସ ଖାଇ ଚିକିଣିଆ ପଡିଗଲା। କିଛି ଦିନ ପରେ କନ୍ଧ ବୁଢା ଦେହରୁ ତେଲ ନିଗିଡିଲା।

ବୁଢାର ଏ ଡଉଲ ଡାଉଲ ରୂପ ଦେଖି ବାଘ ଥରେ ତାକୁ ମଜାରେ କହିଲା: କିହୋ, କନ୍ଧ ତମେତ ବେଶ୍ ଚିକିଣେଇ ଗଲଣି। ଜଥା କ'ଣ। ବାଘ ଏହା କହି ସାରିବା ପରେ ଦୁହେଁ ହସି ହସି ଗଡିଗଲେ। ବାଘ କିନ୍ତୁ ଏହା ମଜାରେ କହିଥିଲା।

କଥାଟା କିନ୍ତୁ କନ୍ଧ ବୁଢାର ହାଡରେ ବାଜି ଗଲା। ସେ ଭୟ ପାଇଗଲା। ବାଘ ମାଘ ଲୋକ, ତାକୁ କି ଭରସା। କେବେ ତାକୁ ଖାଇଦେବ, କିଛି ଅସମ୍ଭବ ନୁହେଁ। ବାଘ କିନ୍ତୁ କନ୍ଧ ବୁଢାକୁ ପୂର୍ବଠାରୁ ଅଧିକ ଭଲ ପାଉଥିଲା।

କନ୍ଧ ବୁଢା ବାଘକୁ ମାରିବାକୁ ଯୋଜନା କଲା। ଏକ ବିରାଟ ଗାତ ଖୋଳି ତା ଉପରେ ପତ୍ର ବିଛେଇ ଦେଲା। ବାଘ ସେଇ ଗାତକୁ ଖସି ପଡି ଆଉ ଉଠିପାରିଲା ନାହିଁ। କନ୍ଧ ବୁଢା

ତାକୁ ମାରିବାକୁ ଯୋଜନା କରିଛି ବୋଲି ବାଘ ଜାଣି ପାରି ଭାରି ମନ ଦୁଃଖ କଲା । ତଥାପି ତାକୁ ଉଦ୍ଧାର କରିବାକୁ ବାଘ କନ୍ଧ ବୁଢାକୁ କହିଲା ନାହିଁ। ତେବେ ମରିବା ପୂର୍ବରୁ ବାଘ କନ୍ଧ ବୁଢାକୁ କହିଲାଃ ବୁଝିଲ, କନ୍ଧ ତମେ ମୋ ସହିତ ବିଶ୍ୱାସଘାତକତା କଲ। ତେବେ ମୋର ମନ ଦୁଃଖ ନାହିଁ। ମୁଁ ଗୋଟିଏ କଥା କହୁଛି, ତାହା କରିବ ଏବଂ ତମର ବହୁତ ଲାଭ ହେବ। ମୁଁ ମରିଗଲା ପରେ ତମେ ମୋର ମୁଣ୍ଡ, ଗଣ୍ଡି, ଗୋଡ ଓ ଲାଞ୍ଜକୁ ଭିନ୍ନ ଭିନ୍ନ ସ୍ଥାନରେ ପୋତି ଦେବ ଏବଂ ପରେ ବହୁତ ଉପକାର ପାଇବ।

ସେହି ଖାଲ ଭିତରେ ପଡି ପଡି କିଛି ଦିନ ପରେ ବାଘଟି ମରିଗଲା । କନ୍ଧ ବୁଢାର କିଛି ମାତ୍ରାରେ ମନ ଦୁଃଖ ହେଲା ଏବଂ ଭୁଲିଗଲା । ତେବେ ବାଘ କହିଥିବା କଥାଟା ତାର ମନେ ଥିଲା । ବାଘ କହିଥିବା ଅନୁଯାୟୀ, ମୁଣ୍ଡ, ଗଣ୍ଡି, ଗୋଡ, ଲାଞ୍ଜକୁ ଅଲଗା ଅଲଗା ସ୍ଥାନରେ ପୋତି ଦେଲା। କିଛି ଦିନ ପରେ ସେହି ସ୍ଥାନମାନଙ୍କରେ ଖୋଳି ଦେଖିଲା, ଯେଉଁଠି ମୁଣ୍ଡ ପୋତିଥିଲା ସେଠି ସୁନା, ଯେଉଁଠି ଗୋଡ ପୋତିଥିଲା ସେଠି ହୀରା, ଯେଉଁଠି ଗଣ୍ଡି ପୋତିଥିଲା ସେଠି ରୂପା ଓ ଯେଉଁଟି ଲାଞ୍ଜ ପୋତିଥିଲା ସେଠୁ ମୋତି, ମାଣିକ ପାଇଲା । ଏତେସବୁ ଧନରତ୍ନ ପାଇ କନ୍ଧ ବୁଢା ଧନୀ ହୋଇଗଲା । କିଛି ଦିନ ପରେ କନ୍ଧ ବୁଢା ସେ ଅଞ୍ଚଳରେ ସବୁଠୁ ବଡ଼ ସାଉକାର ପାଲଟିଗଲା। ଲୋକେ ଦେଖି ଆଶ୍ଚର୍ଯ୍ୟ ହେଲେ। ଜଙ୍ଗଲରୁ କାଠ କାଟୁଥିବା କନ୍ଧ ବୁଢା କେମିତି ଏତେ ଧନୀ ହୋଇଗଲା? ନିଶ୍ଚେ ବୁଢା କେଉଁଠୁ କିଛି ପୋତା ଜିନିଷ ପାଇଛି ବୋଧେ ଗାଁ ଲୋକେ ଭାବିବାକୁ ଲାଗିଲେ।







# ହଜାରେ ମାରୁ

(କୋରାପୁଟ କିଲ୍ଲାର ପରଜା ଲୋକଗପ)

ଗୋଟିଏ ଗାଁରେ ସ୍ୱାମୀ ଓ ସ୍ତ୍ରୀ ଦୁଇ ଜଣ ଥିଲେ। ଦୁହେଁ ଗାଁରେ ମିଠା, ଗାରି, ପକୁଡ଼ି ଦୋକାନ କରିଥିଲେ। ଗାଁର ପରଜା ଦେଶିଆ ଲୋକମାନେ ବିଲବାଡ଼ିରୁ କାମ ଧନ୍ଦା ସାରି ସନ୍ଧ୍ୟାରେ ଦୋକାନକୁ ଡିକାସିନି (ନାଲି ଚା) ପିଇବାକୁ ଆସନ୍ତି। ଦୋକାନରେ ମିଠା ବିକି ଦୁହେଁ ପରିବାର ଚଳାନ୍ତି।

ମିଠା, ଗାରି ଓ ପକୁଡ଼ିରେ ବହୁ ସଂଖ୍ୟାରେ ମାଛି ବସୁଥିବାରୁ ଦୋକାନୀଟି ବିରକ୍ତି

ଏହି ଶବ୍ଦ ଶୁଣି ପଡୋଶୀ ରାଜ୍ୟର ସୈନ୍ୟମାନେ ଭାବିଲେ; ବୋଧେ ହକାରେ ମାରୁ ଆସି ସୀମାନ୍ତରେ ପହଞ୍ଚିଗଲା । ତେଣୁ ତାଙ୍କର ମୃତ୍ୟୁ ସୁନିଶ୍ଚିତ ହୋଇଗଲା ଭାବି ସୈନ୍ୟମାନେ କେ କୁଆଡେ ଛତ୍ରଭଙ୍ଗ ଦେଇ ପଳେଇ ଗଲେ ।

ମଜାର କଥା ଏହି ସମୟରେ ରାଜାଙ୍କ ଦୂତମାନେ ମଧ୍ୟ ସେଠାରେ ପହଞ୍ଚିଗଲେ । ସେମାନେ ଏହି ଲୋକଟିକୁ ହକାରେ ମାରୁ ବୋଲି ଭାବିନେଲେ । କାରଣ ଏହି ଲୋକଟି ପାଇଁ ପଡୋଶୀ ସୈନ୍ୟମାନେ ଛତ୍ରଭଙ୍ଗ ଦେଲେ । କ୍ରମେ ଏହି ଖବର ସମଗ୍ର ରାଜ୍ୟରେ ଚାଞ୍ଚଲ୍ୟ ଖେଳାଇ ଦେଲା । ହକାରେ ମାରୁର ଜୟଜୟ ଗାନ ହେଲା ।

ଦୂତମାନେ ହକାରେ ମାରୁକୁ ନେଇ ରାଜାଙ୍କ ନିକଟରେ ଉପସ୍ଥିତ କରାଇଲେ । ରାଜା ସିଂହାସନରୁ ଓହ୍ଲାଇ ସସମ୍ମାନେ ହକାରେ ମାରୁକୁ ସ୍ୱାଗତ ଜଣାଇ ତାଙ୍କ ସେନାବାହିନୀର ମୁଖ୍ୟ କରାଇଲେ । ସେହିଦିନୁ ଏହି ମିଠା ଦୋକାନୀଟି ହକାରେ ମାରୁ ନାମରେ ବିଖ୍ୟାତ ହୋଇ ସେନାବାହିନୀର ମୁଖ୍ୟ ହୋଇ ରହିଲେ । ଶୁଣାଯାଏ, ଯେପର୍ଯ୍ୟନ୍ତ ହକାରେ ମାରୁ ରାଜାଙ୍କ ସେନାବାହିନୀର ମୁଖ୍ୟ ହୋଇ ରହିଥିଲେ, ସେପର୍ଯ୍ୟନ୍ତ କୌଣସି ପଡୋଶୀ ରାଜା ଏହି ରାଜ୍ୟକୁ ଆକ୍ରମଣ କରି ନଥିଲେ ।





ଜଙ୍ଗଲରେ ରହୁଥିବା ରାକ୍ଷସ ଭାଇ ଦିନେ ତା ଭଉଣୀକୁ ଦେଖା କରିବାକୁ ଇଚ୍ଛା କଲା। ତେଣୁ ସେ ଭଉଣୀକୁ ଦେଖିବା ପାଇଁ ନିକଟ ଗାଁକୁ ଆସିଲା। ସେ କିନ୍ତୁ ଛଦ୍ମ ବେଶରେ ଗାଁକୁ ଆସିଲା। ଗାଁରେ ପହଞ୍ଚି ପଚାରି ପଚାରି ଛଦ୍ମବେଶୀ ରାକ୍ଷସଟି ଭଉଣୀ ଘର ପାଇଲା। ଭଉଣୀ ରାକ୍ଷସ ଭାଇକୁ ଚିହ୍ନି ପାରିଲା। ରାକ୍ଷସ ଭାଇ ଭଉଣୀ ଘରେ ପହଞ୍ଚି ଖଟିଆଟିରେ ବସିଲା। ଯାଇ ଭିଣୋଇ ଭାଇଙ୍କୁ ନମସ୍କାର କଲା। କିନ୍ତୁ ଭିଣୋଇ ତାଙ୍କର ଏହି ଶଳାକୁ ଖରାପ ବ୍ୟବହାର କଲା। ତଥାପି ରାକ୍ଷସ ତାର ନିଜ ରୂପ ଦେଖାଇଲା ନାହିଁ। ଧୈର୍ଯ୍ୟ ଧରି ରହିଲା। ଏହା ପରେ ଭିଣୋଇ ତା ଭଉଣୀକୁ ଏକ ଛାଟିଆରେ ପିଟିପିଟି ଦରମଲା କରି ଦେଲା। କିଛି ଯୌତୁକ ଆଣି ନଥିବାରୁ ଭିଣୋଇ ଭଉଣୀକୁ ପିଟୁଥିବାର ରାକ୍ଷସ ଭାଇ ଜାଣିଲା। ତା ମନରେ ବହୁତ କଷ୍ଟ ହେଲା।

ଭିଣୋଇକୁ ବାଟକୁ ଆଣିବା ପାଇଁ ରାକ୍ଷସ ଭାଇ ମନେମନେ ଚିନ୍ତା କଲା। ତେଣୁ ରାକ୍ଷସ ଗୋଟିଏ ଉପାୟ ବାହାର କଲା। ଭଉଣୀ, ଭିଣୋଇକୁ ତା ଘରକୁ ନିମନ୍ତ୍ରଣ କଲା। ଘରକୁ ଗଲେ ବାକିଆ ଥିବା ସମସ୍ତ ଯୌତୁକ ସେ ଦେଇ ଦେବ ବୋଲି ଭିଣୋଇ ଭାଇଙ୍କୁ କହିଲା। ଭିଣୋଇ ଶଳାର ଏହି କଥାକୁ କିନ୍ତୁ ହସରେ ଉଡାଇ ଦେଲା। ଶଳା ଶାଙ୍ଗରେ ଘରକୁ ଯିବାକୁ ଭିଣୋଇ ରାଜି ହେଉ ନଥିଲା। ଭଉଣୀ ବୁଝାସୁଝା କରିବାରୁ ଶେଷରେ ଦୁହେଁ ଛଦ୍ମବେଶୀ ରାକ୍ଷସ ଭାଇ ସାଙ୍ଗରେ ଜଙ୍ଗଲକୁ ଗଲେ।

ଯେମିତି ଜଙ୍ଗଲରେ ପହଞ୍ଚିଛନ୍ତି, ସେଉଠୁ ରାକ୍ଷସ ତାର ନିଜ ରୂପ ଧାରଣ କଲା। ଭିଣୋଇ ଏତେ ବିଶାଳ ଭୟଙ୍କର ରାକ୍ଷସକୁ ଦେଖି ଛାନିଆରେ ଲୁଗାରେ ଏକ କରି ପକେଇଲା। ଭଉଣୀ କିନ୍ତୁ ତା ରାକ୍ଷସ ଭାଇକୁ ଭଲ ଭାବେ ଜାଣିଥିଲା। ତେଣୁ ସେ ଡରିଲା ନାହିଁ। ଭିଣୋଇ ରାକ୍ଷସକୁ ଡରି ସେଠାରୁ ଘରକୁ ଫେରି ଆସିବାକୁ ସ୍ତ୍ରୀକୁ କହିଲା। ସ୍ତ୍ରୀ କହିଲା: ବୁଝିଲ, ରାକ୍ଷସ ଭାଇ ବହୁତ ଭଲ ଲୋକ। ସେ ଆମକୁ କିଛି ଦେଇ ନଥିଲେ। ଏଥର ଆମକୁ ବହୁତ ଧନ ସମ୍ପତ୍ତି ଦେଇ ବିଦା କରିବେ। ତମେ ଛାନିଆ କାହିଁକି ହଉଛ?

ଏହି ସମୟରେ ରାକ୍ଷସଟି ଏକ ହାତୀକୁ କଳଖିଆ କରୁଥିବାର ଦେଖି ଭିଣୋଇ ଛାନିଆରେ ଚେତାଶୂନ୍ୟ ହୋଇ ପଡିଲା। ରାକ୍ଷସ କିନ୍ତୁ ଭିଣୋଇ ସାଙ୍ଗରେ ଭଲ କଥାବାର୍ତ୍ତା ହେଲା। ଭଉଣୀ ଭିଣୋଇ କିଛି ଦିନ ରାକ୍ଷସ ଘରେ ରହିଲେ। ଭିଣୋଇର କିନ୍ତୁ ଶୀଘ୍ର ଶୀଘ୍ର ଘରକୁ ଫେରି ଆସିବାକୁ ଇଚ୍ଛା ହେଉଥାଏ। କିନ୍ତୁ ରାକ୍ଷସ ଭୟରେ କିଛି କହି ପାରୁ ନଥାଏ। ରାକ୍ଷସଟି ଆକାରରେ ବିରାଟ ଥିଲା। ସେ ଏତେ ବିଶାଳକାୟ ଥିଲା ଯେ, ହାତୀ, ବାଘ, ସିଂହକୁ ତାର କଳଖିଆ କରୁଥିଲା। ବାଘ, ଭାଲୁ ଓ ଜଙ୍ଗଲର ଯେତେ ପଶୁ ଏହି ରାକ୍ଷସର ଭୟରେ ଥରହର ହେଉଥିଲେ।

ରାକ୍ଷସ ବଣରେ ବାଘକୁ ହଳ ବଳଦ କରି ସାପକୁ ଦଉଡି କରି ହଳ ବୁଲାଉଥିଲା।



ହଜାରେରୁ ଊର୍ଦ୍ଧ୍ୱ ବିଲୁଆମାନଙ୍କୁ ଧାନ ରୁଆ, ଉପଡା କାମରେ ଲଗେଇଥିଲା । ରାକ୍ଷସର ଅଚଳାଚଳ ସମ୍ପତ୍ତି ଚାଷ ଦେଖି ଭିଣୋଇ ଆଶ୍ଚର୍ଯ୍ୟ ହେଉଥାଏ । ଯାହାର ଭାଇ ଏତେ ଧନୀ ଓ ଭୟଙ୍କର ସେ ପୁଣି ତାର ଭଉଣୀକୁ କେତେ ମାରଧର କରୁଥିଲା ! ଏକଥା ଭାବି ଭିଣୋଇଟି ମନେମନେ ଆତଙ୍କିତ ହୋଇ ପଡିଲା । ତାର ଭଉଣୀକୁ ମାରଧର କରୁଥିବା କଥା କାଳେ ରାକ୍ଷସ ଜାଣି ପାରି ତାକୁ ପାଦରେ ଦଳିଦେଇ ମାରିଦେବ, ଏହା ଭାବିଭାବି ଭିଣୋଇ ଛାନିଆ ହୋଇ ପଡିଲା । ତେଣୁ ଏବେଠୁ ଆଉ କେବେ ବି ସ୍ତ୍ରୀକୁ ମାରିବ ନାହିଁ ବୋଲି ସେ ମନେମନେ ପ୍ରତିଜ୍ଞା କଲା ।

ଭଉଣୀ, ଭିଣୋଇ ବହୁତ ଦିନ ଧରି ରାକ୍ଷସର ଘରେ ରହିବା ପରେ ନିଜ ଘରକୁ ଫେରିଲେ। ରାକ୍ଷସ ଭଉଣୀ, ଭିଣୋଇକୁ ବିଦା କଲାବେଳେ ଦୁଇ ଟ୍ରକ୍ ସୁନା, ଦୁଇ ଟ୍ରକ୍ ରୂପା, ଦୁଇ ଟ୍ରକ୍ ହୀରା ଦେଇ ପଠେଇଲା । ଭିଣୋଇର ଚାଷବାସ କରିବା ପାଇଁ ଚାରିଟା ହାତୀ, ଦଶଟା ବାଘ ମଧ୍ୟ ପଠେଇଲା । ଭିଣୋଇ ରାକ୍ଷସର ଏତେ ଧନରତ୍ନ ଅଚଳାଚଳ ସମ୍ପତ୍ତି ଦେଖି ଏକଦମ୍ ଚୁପ୍ ହୋଇଗଲା । ସେ ନିଜ କଲା କର୍ମକୁ ନିନ୍ଦା କରୁଥିଲା । ଏଭଳି ଏକ ଭାଇର ଭଉଣୀକୁ ସେ ନିର୍ଯାତନା ଦେଉଥିବାରୁ ନିଜକୁ ଧିକ୍କାରିଲା ଓ ନିଜ ସ୍ତ୍ରୀ ଆଗରେ କ୍ଷମା ମାଗିଲା ।

ଭିଣୋଇ ନିଜର ଭୁଲ୍ ବୁଝି ପାରିଛନ୍ତି ବୋଲି ରାକ୍ଷସ ଅନୁଭବ କଲା । ତେଣୁ ଧନରତ୍ନ ସହିତ ସୁଖରେ ଭଉଣୀ ଭିଣୋଇକୁ ବିଦା କଲା । ରାକ୍ଷସ ଭୟରେ ସେହି ଦିନଠୁ ଲୋକଟି ଆଉ ତାର ସ୍ତ୍ରୀକୁ କେବେ ବି ମାରିଥିବାର ଦେଖାଯାଇନି ।







# ମାଙ୍କଡ଼ର ମୁହଁ କଳା କାହିଁକି?

(କୋରାପୁଟ ଜିଲ୍ଲାର ପରଜା ଲୋକ ଗପ)

ଥରେ ଜଙ୍ଗଲରେ ସିଂହ ରାଜାଙ୍କ ଅଧ୍ୟକ୍ଷତାରେ ଏକ ଗୁରୁତ୍ୱପୂର୍ଣ୍ଣ ଅଧିବେଶନ ବସିଲା । ମଣିଷମାନେ ଟଙ୍କା ପ୍ରଚଳନ କରି ଦୋକାନ ବଜାର କରୁଥିବାରୁ ଜଙ୍ଗଲରେ ମଧ୍ୟ ଟଙ୍କାର ପ୍ରଚଳନ ହେବ ବୋଲି ନିଷ୍ପତ୍ତି ନିଆଗଲା ।

ସିଂହ ରାଜା ମାଙ୍କଡ଼କୁ ଟଙ୍କା ତିଆରି କରିବାକୁ ନିର୍ଦ୍ଦେଶ ଦେଲେ । ନିଷ୍ପତ୍ତି ହେଲା ସ୍ୱର୍ଣ୍ଣ ମୁଦ୍ରା ପ୍ରଚଳନ ହେବ । ମଣିଷଙ୍କଠାରୁ ଏହି ମୁଦ୍ରାର ମୂଲ୍ୟ ଅଧିକ ହେବ । ଯେମିତି ବର୍ତ୍ତମାନର ଭାରତୀୟଙ୍କ ଟଙ୍କା ତୁଳନାରେ ଡଲାରର ମୂଲ୍ୟ ଅଧିକ, ସେମିତି ପଶୁଙ୍କ ସ୍ୱର୍ଣ୍ଣ ମୁଦ୍ରା ମଣିଷଙ୍କ ଟଙ୍କା ତୁଳନାରେ ଅଧିକ ହେବ ବୋଲି ଅଧିବେଶନରେ ନିଷ୍ପତ୍ତି ନିଆଗଲା । ଏକଥାରେ ସବୁ ପଶୁମାନେ ଏକମତ ହେଲେ ।

ଜଙ୍ଗଲରେ ଦୋକାନ ବଜାର ପ୍ରତିଷ୍ଠା ହେବ ଓ ଟଙ୍କାର କାରବାର ହେବ। ଏଥିନେଇ ପଶୁମାନେ ବେଶ୍ ଉତ୍ସାହିତ ହୋଇ ପଡିଲେ। ସେମାନେ ମଣିଷଙ୍କ ସହିତ ପ୍ରତିଯୋଗିତା କରିବେ ଏବଂ ସେମାନଙ୍କ ସ୍ୱର୍ଣ୍ଣ ମୁଦ୍ରା ମଣିଷଙ୍କ ଟଙ୍କା ଠାରୁ ଅଧିକ ମୂଲ୍ୟଯୁକ୍ତ ହେବ। ତେଣୁ ପଶୁମାନେ ସେଦିନ ଜଙ୍ଗଲରେ ଭୋଜିଭାତ କରି ଖାଇଲେ। କଥା ହେଲା ମାଙ୍କଡ଼ମାନେ ସ୍ୱର୍ଣ୍ଣ ମୁଦ୍ରା ତିଆରି କରିବେ।

ଘୋଡା, ଗଧ, ବିଲୁଆମାନେ ଜଙ୍ଗଲରୁ ସୁନାତକ ଆଣି ମାଙ୍କଡ଼ ନିକଟରେ ପହଞ୍ଚାଇଲେ। ମାଙ୍କଡ଼ ଏହି ସୁନାରେ ମୁଦ୍ରା କରିବାକୁ ରାଜି ହେଲା।

ମାଙ୍କଡ଼ ତ ମଣିଷଙ୍କ ଭଳି ଚତୁର ଥିଲା। ତାର ଏତେ ସୁନା ଦେଖି ଲୋଭ ହେଲା। ତେଣୁ ସେ ଲୁହାରେ ମୁଦ୍ରା ତିଆରି କରି ତା ଉପରେ ସୁନାର ଏକ ପ୍ରଲେପ ଦେଇ ମୁଦ୍ରା ତିଆରି କଲା। ମୁଦ୍ରା ଗୁଡିକ ଲୁହାର କି ସୁନାର ଜଙ୍ଗଲର ପଶୁମାନେ ବି ଜାଣି ପାରିଲେ ନାହିଁ। ଉପରେ ସୁନା ଭଳି ଚକ୍‌ଚକ୍ କରୁଥିବାରୁ ଜଙ୍ଗଲର ପଶୁମାନେ ବେଶ୍ ଖୁସି ହୋଇଗଲେ। ଏହାପରେ ଜଙ୍ଗଲରେ ଦୋକାନ ବଜାର ବସିଲା। ସ୍ୱର୍ଣ୍ଣ ମୁଦ୍ରା ପ୍ରଚଳନ ହେଲା। ପଶୁମାନେ ମୁଦ୍ରା ବିନିମୟରେ ଜିନିଷ କିଣିଲେ।

ପଶୁମାନେ ସବୁ ଜିନିଷ କ୍ରୟବିକ୍ରୟ କଲେ। ହେଲେ ସେମାନେ ମଣିଷଙ୍କ ଭଳି ମିଠା ତିଆରି କରିପାରିଲେ ନାହିଁ। ତେଣୁ ଥରେ ଜଙ୍ଗଲରାଜ ସିଂହ ଭାଲୁକୁ ଦୁଇଟି ସ୍ୱର୍ଣ୍ଣ ମୁଦ୍ରା ଦେଇ ପାଞ୍ଚ ଶେର ମିଠା ଆଣିବାକୁ ପଠେଇଲେ।

ଭାଲୁ ଦୁଇଟି ସ୍ୱର୍ଣ୍ଣ ମୁଦ୍ରା ନେଇ ମଣିଷଙ୍କ ବଜାରକୁ ଗଲା। ପଶୁମାନଙ୍କ ସ୍ୱର୍ଣ୍ଣ ମୁଦ୍ରାକୁ ଭାଲୁ ମନେମନେ ଭାରି ଗର୍ବ କରୁଥାଏ। ମଣିଷଙ୍କର ଲୁହାରେ ଟଙ୍କା, ତାଙ୍କର ସୁନାରେ। ତେଣୁ ତାଙ୍କ ମୁଦ୍ରାର ମୂଲ୍ୟ ବେଶି; ଏହା ଭାବି ଭାଲୁ ଗର୍ବରେ ଫାଟି ପଡୁଥାଏ।

ଭାଲୁ ଗୋଟିଏ ଗୁଡିଆ ଦୋକାନକୁ ଯାଇ ଦୁଇଟି ସ୍ୱର୍ଣ୍ଣ ମୁଦ୍ରା ବଢେଇ ଦେଇ କହିଲା: ଗୁଡିଆ ଭାଇ, ଆମ ରାଜାଙ୍କ ପାଇଁ ପାଞ୍ଚ ଶେର ମିଠା ଦେବ। ଗୁଡିଆ ଭାଲୁଠାରୁ ଦୁଇଟି ସ୍ୱର୍ଣ୍ଣ ମୁଦ୍ରା ନେଲା। ଗୁଡିଆ ସ୍ୱର୍ଣ୍ଣ ମୁଦ୍ରାକୁ ଦେଖି ଭାରି ଖୁସି ହୋଇଗଲା। ତେବେ ଭଲକି ଦେଖିଲା ବେଳକୁ ମୁଦ୍ରାଟି ନକଲି ବୋଲି ଗୁଡିଆ ଜାଣି ପାରିଲା। ମୁଦ୍ରାଟିକୁ ଏକ ପଥରରେ ଛେଚି ଦେବାରୁ ସୁନା ପାତିଆଟିକ ବାହାରି ପଡିଲା ଏବଂ ଅସଲ ଲୁହା ମୁଦ୍ରାଟି ପଦାକୁ ଆସିଲା।

ଗୁଡିଆ ପଶୁମାନଙ୍କର ଏପରି ଠକାମୀ ଦେଖି ରାଗିଗଲା। ସେହି ମୁଦ୍ରା ଦୁଇଟିକୁ ଭାଲୁ ମୁହଁକୁ ଫିଙ୍ଗିଦେଲା। ଭାଲୁ ମଧ୍ୟ ଲଜ୍ୟା ଅନୁଭବ କଲା। ଲାଜରେ ଭାଲୁ ଚୁପ୍‌ଚାପ୍ ଜଙ୍ଗଲକୁ ଫେରିଗଲା।

ମାଙ୍କଡ଼ର ଏପରି ଠକାମୀ ସମ୍ପର୍କରେ ଭାଲୁ ଯାଇ ରାଜା ସିଂହଙ୍କ ନିକଟରେ ଫେରାଦ ହେଲା । ରାଜା ପୁଣି ଏକ ବୈଠକ ଡାକିଲେ । ମାଙ୍କଡର ଏପରି ଠକାମୀ ସମ୍ପର୍କରେ ବୈଠକରେ ମୁଖ୍ୟତଃ ଆଲୋଚନା ହେଲା । ମାଙ୍କଡ଼ ମୁହଁରେ କଳା ରଙ୍ଗ ବୋଳାଯାଇ ତାକୁ ଜଙ୍ଗଲରେ ବୁଲାଯିବ ବୋଲି ଶେଷରେ ବୈଠକରେ ନିଷ୍ପତ୍ତି ନିଆଗଲା । ଏହା ପରେ ଜଙ୍ଗଲର ସବୁ ପଶୁମାନେ ମାଙ୍କଡ଼ ମୁହଁରେ କଳା ରଙ୍ଗ ବୋଳି ଜଙ୍ଗଲସାରା ବୁଲାଇଲେ ।

ସେହିଦିନଠାରୁ ମାଙ୍କଡ଼ର ମୁହଁ କଳା ହୋଇଯାଇଛି ବୋଲି ବିଶ୍ୱାସ କରାଯାଉଛି ।









# ସାତ ଭାଇ ଓ ଭଉଣୀ ଗପ

(ରାୟଗଡା ଜିଲ୍ଲାର ସଉରା ଲୋକ ଗପ)

ଗୋଟିଏ ଦେଶରେ ସାତ ବଣିକ ଥିଲେ। ତାଙ୍କର ଏକମାତ୍ର ଅଲିଅଳି ଭଉଣୀ ଥିଲା। ସାତ ଭାଇମାନେ ଭଉଣୀକୁ ଅଧିକ ସ୍ନେହ ଆଦର କରୁଥିଲେ। ଭାଉଜମାନେ କିନ୍ତୁ ନଣନ୍ଦକୁ ଭଲ ପାଉ ନଥିଲେ।

ଥରେ ଭାଇମାନେ ବଣିକ କରିବାକୁ ବିଦେଶ ଯାଇଛନ୍ତି। ଭାଉଜମାନେ ମିଶିକି ନଣନ୍ଦକୁ ପନିକିରେ କାଟି ନଦୀରେ ଫିଙ୍ଗିଦେଇ ଆସିଲେ। ସବା ସାନ ଭାଉଜ କିନ୍ତୁ ନଣନ୍ଦକୁ ଅଧିକ ଗେହ୍ଲା କରୁଥିଲେ।

ଭାଇମାନେ ବିଦେଶରୁ ଫେରି ତାଙ୍କର ଏକମାତ୍ର ଭଉଣୀକୁ ଖୋଜିଲେ। କିନ୍ତୁ ଘରେ ପାଇଲେ ନାହିଁ। ଭଉଣୀ କେଉଁଠିକୁ ଯାଇଛି ବୋଲି ଭାଇମାନେ ସେମାନଙ୍କ ସ୍ତ୍ରୀମାନଙ୍କୁ କହିଲେ। ଏଇଠି କେଉଁଠି ପାଖକୁ ବୁଲି ଯାଇଛି ବୋଲି ଭାଉଜମାନେ ନିଜନିଜ ସ୍ୱାମୀଙ୍କୁ

ଡରିକି ସେମାନଙ୍କୁ ସ୍ୱାମୀଙ୍କୁ କହିଲେ। ସେମାନଙ୍କ ସ୍ୱାମୀମାନେ ତ ଆଗରୁ ଏ ଘଟଣା ସମ୍ପର୍କରେ ସବୁ ଜାଣିଥାନ୍ତି। ସେମାନେ ଜାଣିକି ଅଜଣା ହୋଇ ଘଟଣା କ'ଣ ବୋଲି ପଚାରିଲେ। ସେମାନଙ୍କ ଭଉଣୀ କେଉଁଠି ବୋଲି ପଚାରିବାରୁ ଭାଉଜମାନେ ଡରିଗଲେ। ଏହି ଫୁଲ ହିଁ ସେମାନଙ୍କ ନଣନ୍ଦ ବୋଲି ଭାଉଜମାନେ ଜାଣି ପାରିଲେ। ଏବଂ ସବୁ ସତ କଥା ମାନିଗଲେ।

ଏହା ପରେ ସାନ ଭାଉଜ ସବୁ ଫୁଲ ପାଖୁଡାମାନଙ୍କୁ ଏକାଠି କରି ମିଶେଇ ଦେଇ ଠାକୁରଙ୍କୁ ପ୍ରାର୍ଥନା କରିବାକୁ ମା ଡଙ୍ଗର ଦେବୀ ପୁଣି ନଣନ୍ଦର ଜୀବଦାନ ଦେଲେ। ନଣନ୍ଦ ପୁଣି ବଞ୍ଚି ଉଠିଲା। ଏହା ଦେଖି ଭାଇମାନେ ଖୁସି ହୋଇଗଲେ। ଭାଉଜମାନେ ସେମାନଙ୍କ ଭୁଲ୍ ବୁଝିପାରି ନଣନ୍ଦକୁ କ୍ଷମା ମାଗିଲେ। ଭାଇମାନେ ରାଗରେ ସେମାନଙ୍କ ସ୍ତ୍ରୀକୁ ମାରି ଦେବାକୁ ଉଦ୍ୟତ ହେବାରୁ ଭଉଣୀ ସେମାନଙ୍କୁ ଅଟକାଇ ଭାଉଜମାନଙ୍କୁ କ୍ଷମା କରିଦେବାକୁ ପ୍ରାର୍ଥନା କଲା। ଭାଉଜମାନେ ସେମାନଙ୍କ ଭୁଲ୍ ବୁଝିପାରି ନଣନ୍ଦଙ୍କୁ କ୍ଷମା ମାଗିବାରୁ ନଣନ୍ଦ ସେମାନଙ୍କୁ କ୍ଷମା ଦେଇ ଭାଇମାନଙ୍କୁ ବଚୁଝାଇଲା। ଭାଇମାନେ ଭଉଣୀକୁ ପାଇଁ ପୂର୍ବ ପରି ଖୁସି ରହିଲେ।







# କୁହୁକ ମୁଦି

(ନବରଙ୍ଗପୁର ଜିଲ୍ଲାର ଭତରା ଲୋକ କଥା)

ଗୋଟିଏ ଗାଁରେ ବିଧବା ବୁଢିଟିଏ ଥିଲା । ତାର ଏକମାତ୍ର ପୁଅଟିଏ ଥିଲା । ସେମାନେ ସାଙ୍ଗରେ ଗୋଟିଏ କୁକୁର ଓ ଗୋଟିଏ ବିଲେଇ ପାଳିଥିଲେ। ଏହି କୁକୁର ଓ ବିଲେଇ ତାଙ୍କ ପରିବାରର ଅନ୍ୟ ଦୁଇ ସଦସ୍ୟ ଭଳି ଚଳୁଥିଲେ।

ପୁଅଟି ଦେଖିବାକୁ ରାଜ କୁମାର ଭଳି, ହେଲେ ଅଭାଗା । ଗରିବ ହୋଇଥିବାରୁ ସବୁବେଳେ ଜଙ୍ଗଲ ଯାଇ କାଠ କାଟେ। କାଠ ବିକି ମା ପୁଅ ଦୁଇ ପ୍ରାଣୀ ଚଳନ୍ତି।

ଦିନେ ବୁଢିର ପୁଅ ଜଙ୍ଗଲରେ ଗୋଟିଏ ଗଛକୁ କାଟୁକାଟୁ ହଠାତ୍ ସେହି ଗଛରୁ ଗୋଟିଏ ଯକ୍ଷ ବାହାରିଲା। ଯକ୍ଷର ଆଲୁଅରେ ସମଗ୍ର ଜଙ୍ଗଲ ଆଲୋକିତ ହୋଇ ପଡିଲା। ଯକ୍ଷ ଦେହରୁ ଏତେ ଆଲୁଅ ବାହାରୁଥିବାର ଦେଖି ବୁଢିର ପୁଅ ଡରିଗଲା।

ଯକ୍ଷ ବୁଢିର ପୁଅକୁ କହିଲା : ରେ ପିଲା, ତୁ ଆଉ ଏ ଗଛ କାଟେନା। ମୁଁ ତତେ ଏକ ମୁଦି ଦେଉଛି। ଏହାକୁ ତୁ ଯାହା ମାଗିବୁ ତାହା ଦେବ। ମାତ୍ର ରାତିରେ ଶୋଇଲାବେଳେ ଏହି ମୁଦିକୁ ପାଟିରେ ପୂରେଇ ରଖିବୁ। ଯକ୍ଷ ପାଖରୁ ମୁଦି ନେଇ ବୁଢିର ପୁଅ ମନ ଆନନ୍ଦରେ ଘରକୁ ଫେରିଲା।

ମୁଦିଟିକୁ ପରୀକ୍ଷା କରିବା ପାଇଁ ସେ ହଠାତ୍ ଏକ ନୂଆ ଘର ମାଗିଲା। ସଙ୍ଗେସଙ୍ଗେ ତାଙ୍କର ଏକ ନୂଆ କୋଠାଘର ହୋଇଗଲା। ବୁଢିର ପୁଅ ଏହା ଦେଖି କାବା ହୋଇଗଲା। ସତକୁ ସତ ଏ କୁହୁକ ମୁଦି କାମ ଦେଖୋଉଛି। ଯକ୍ଷ ତାକୁ ଠକିନାହିଁ। ଏହା ପରେ ବୁଢିର ପୁଅ କୁହୁକ ମୁଦିକୁ ସୁନା, ରୂପା, ଧନରତ୍ନ ମାଗିଲା। ସଙ୍ଗେସଙ୍ଗେ ତାର ଘର ଧନରତ୍ନରେ ପୂର୍ଣ୍ଣ ହୋଇଗଲା। ବୁଢି ଓ ତାର ପୁଅ ଏହା ଦେଖି ଆନନ୍ଦରେ ନାଚି ଉଠିଲେ।

ଏହା ପରେ ବୁଢିର ପୁଅ ସେ ଅଞ୍ଚଳରେ ସାଉକାର୍ ହୋଇଗଲା। ତାର ଏତେ ଧନ ରତ୍ନ ଚାକରବାକର ଦେଖି ତାର କିଛି ଶତ୍ରୁ ଏମିତି କେମିତି ହେଲା ଜାଣିବାକୁ ଚାହିଁଲେ।

ସେ ରାଜ୍ୟର ରାଜାଙ୍କର ଏକ ସୁନ୍ଦର ରାଜପ୍ରାସାଦ ଥିଲା। ତାଙ୍କର ଏକ ସୁନ୍ଦରୀ ରାଜକୁମାରୀ ଥିଲା। ବୁଢିର ପୁଅ ରାଜାଙ୍କର ପ୍ରାସାଦ ଦେଖି ସେହିଭଳି ଏକ ରାଜପ୍ରାସାଦ କୁହୁକ ମୁଦିକୁ ମାଗିଲା। କୁହୁକ ମୁଦି ସଙ୍ଗେସଙ୍ଗେ ଏକ ରାଜପ୍ରାସାଦ ନିର୍ମାଣ କରେଇଦେଲା। ଚାହୁଁଚାହୁଁ ବୁଢିର ପୁଅ ସେ ରାଜ୍ୟର ଏକ ଧନୀ ହୋଇଗଲା। ରାଜା ମଧ୍ୟ ଏହା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ।

ରାଜା ତାଙ୍କର ଏକମାତ୍ର କନ୍ୟାକୁ ସେହି ଯୁବକକୁ ବିବାହ କରିବା ପାଇଁ ଇଚ୍ଛା କଲେ। ଏହାର କିଛି ଦିନ ପରେ ରାଜା ବୁଢିର ପୁଅକୁ ତାଙ୍କର ଜ୍ୱାଇଁ କଲେ। ବୁଢିର ପୁଅ ରାଜା ଝିଅକୁ ବାହା ହୋଇ ଖୁସିରେ କାଳ କାଟୁଥିଲେ।

ବୁଢି ପୁଅର ଶତ୍ରୁମାନେ ଏହା ଦେଖି ସହିପାରିଲେ ନାହିଁ। ଦିନେ ଶତ୍ରୁମାନେ ଜାଣୁଜାଣୁ ଏହି କୁହୁକ ମୁଦି ସମ୍ପର୍କରେ ଜାଣିବାକୁ ପାଇଲେ। ସେମାନେ ଦିନେ ରାତିରେ ବୁଢି ପୁଅ ଶୋଇଥିବାବେଳେ ତାର ଘରେ ପହଞ୍ଚିଲେ। ବୁଢି ପୁଅ ପାଟି ଆଁ କରି ଶୋଇଥିଲା। ଶତ୍ରୁମାନେ ବୁଢି ପୁଅର ନାକରେ ଏକ କୁଟା ପୂରେଇ ଦେବାରୁ ବୁଢି ପୁଅ ଛିଙ୍କି ପକେଇଲା। ଫଳରେ କୁହୁକ ମୁଦିଟି ଛିଟିକିକି ବାହାରେ ପଡିଗଲା। ଶତ୍ରୁମାନେ ଏହି କୁହୁକ ମୁଦିଟିକୁ ନେଇ ସେ ରାଜ୍ୟ ଛାଡି ସାତ ଦରିଆ ପାର ହୋଇ ପଳେଇଗଲେ।

ଶତ୍ରୁମାନେ କୁହୁକ ମୁଦିକୁ ସେହି ରାଜପ୍ରପାଦ ମାଗିଲେ। ସଙ୍ଗେସଙ୍ଗେ ବୁଢି ପୁଅର ରାଜପ୍ରାସାଦ ଉଭାନ ହୋଇଗଲା। ଏହା ପରେ ଶତ୍ରୁମାନେ ବୁଢି ପୁଅ ବାହା ହୋଇଥିବା

ବିଲୁଆ କହିଲା: ଆଜି ତାହାହେଲେ ବୁଢା, ବୁଢିଙ୍କର ମସ୍ତ ଖାନା ହେଉଛି।

ବିଲୁଆ ଓ ବୁଢାବୁଢିଙ୍କ ମଧ୍ୟରେ ହେଉଥିବା କଥାବାର୍ତ୍ତାକୁ ବାଘ ଶୁଣି ଦେଲା। ବାଘର ଚକୁଳି ଖାଇବାକୁ ଲୋଭ ହେଲା।

ସେଦିନ ବୁଢା, ବୁଢି ଜଙ୍ଗଲରୁ କାଠ ନେଇ ଚକୁଳି କରି ଖାଇଲେ।

ତହିଁ ପରଦିନ ବୁଢାବୁଢି ଜଙ୍ଗଲକୁ ଯାଇଥାନ୍ତି। ବାଘ ଆସି ସେମାନଙ୍କ ରାସ୍ତା ଓଗାଳିଲା। ବୁଢାବୁଢିଙ୍କ ଉଦ୍ଦେଶ୍ୟରେ ବାଘ କହିଲା: କିହୋ, ବୁଢା ଭାଇନା, ତମେ ତ ନିଇତି ଚକୁଳି କରି ଖାଉଛ। ମୋର ଚକୁଳି ଖାଇବାକୁ ଭାରି ଇଛା ହେଉଛି। ମୁଁ ଆଜି ତମକୁ ବିରି, ଚାଉଳ ଓ କାଠ ସବୁ ଦେଉଛି। ମୋତେ ଚକୁଳି କରି ଦେବ। ରାତିକି ମୁଁ ଚକୁଳି ଖାଇବାକୁ ଯିବି। ବାଘ ଚକୁଳି ଖାଇବା ବାହାନାରେ ବୁଢାବୁଢିଙ୍କୁ ମଧ୍ୟ ଖାଇବାକୁ ମନେମନେ ଯୋଜନା କରିଥାଏ। ବାଘ ଭଳି ଜନ୍ତୁକୁ ବୁଢାବୁଢି ହାଡେହାଡେ ଚିହ୍ନିଥାନ୍ତି।

ଏହା ପରେ ବାଘ ବୁଢାବୁଢିଙ୍କୁ ବିରି, ଚାଉଳ ଓ କାଠ ଆଣି ଦେଲା। ବୁଢାବୁଢି ଆନନ୍ଦ ମନରେ ବିରି, ଚାଉଳ ଓ କାଠ ନେଇକି ଘରକୁ ଗଲେ। ବୁଢିର କିନ୍ତୁ ଡର ଥାଏ। ବାଘ ଭଳି ଜନ୍ତୁକୁ କିଛି ବି ବିଶ୍ୱାସ ନାହିଁ। ବଡ଼ ଅଡୁଆରେ ପଡିଲେ ସେମାନେ। ଏମିତି ଭାବିଭାବି ବୁଢାବୁଢି ଘରକୁ ଫେରିଲେ।

ସନ୍ଧ୍ୟାରେ ବୁଢି ପିଠା କଲା। ବୁଢି ପିଠା କରୁଥାଏ, ବୁଢା ଗୋଟିଏ ଗୋଟିଏ ଖାଉଥାଏ। ଏମିତି ଖାଉଖାଉ ସବୁ ଚକୁଳି ଶେଷ ହୋଇଗଲା। ବୁଢି ଡରିଗଲା। ବାଘ ଆସିଲେ ତାକୁ କ'ଣ ଦେବେ? ବାଘ ତ ଶୁଣିଲା ଜନ୍ତୁ ନୁହେଁ। ସେ ସିଧା ବୁଢାବୁଢି ଦିହିଁଙ୍କୁ ଖାଇଦେବ।

ସେଉଟୁ ବୁଢା, ବୁଢି ଗୋଟିଏ ଉପାୟ ପାଞ୍ଚିଲେ। ବୁଢି ଗୋଡି, କାଚ, କଣ୍ଟା, ଲୁହାଗୁଣ୍ଡ ଆଦି ଆଣି ସେଥିରେ ଚକୁଳି କଲା। ଚକୁଳି କରି ତାକୁ ଦାଣ୍ଡ ଦୁଆରେ ରଖି ବୁଢା, ବୁଢି ଗୋଟିଏ ହାଣ୍ଡି ଭିତରେ ପଶିଗଲେ।

ରାତି ହେଲା। ବାଘ ଆସି ବୁଢାବୁଢି ଘର ଆଗରେ ହେଣ୍ଟାଳ ଛାଡିଲା। ବୁଢାବୁଢିଙ୍କ ଉଦ୍ଦେଶ୍ୟରେ ବାଘ କହିଲା: କିହୋ, ବୁଢାବୁଢି କ'ଣ ଶୋଇ ପଡ଼ିଲଣିକି? ମୋ ପିଠା କାହିଁ, ଦିଅ। ବୁଢି ହାଣ୍ଡି ଭିତରୁ ଥାଇ କହିଲା: ବାଘ ମାମୁଁ ସେଇଟି ପିଣ୍ଡାରେ ଚକୁଳି ଥୁଆ ହୋଇଛି। ଖାଇନିଅ।

ଦାଣ୍ଡ ପିଣ୍ଡାରେ ଚକୁଳି ଥୁଆ ହୋଇଥିବା ଦେଖି ବାଘ ଆନନ୍ଦିତ ହୋଇଗଲା। ବାଘ ଆଖି ବୁଜି ସବୁତକ ଚକୁଳି ଖାଇଦେଲା। ଯେମିତି ବାଘ ଚକୁଳିତକ ଖାଇ ଦେଇଛି, ତାର ସବୁତକ ଦାନ୍ତ କଟକଟ କରି ଭାଙ୍ଗିଗଲା। ଗୋଡି, କାଚ, ଲୁହାକୁ ଚୋବେଇ ଦେବାରୁ ବାଘର ସବୁତକ ଦାନ୍ତ ଗଳିପଡିଲା। ବିଚରା ବାଘ ହାଉଳୁମାଉଳୁ ହୋଇ ଜଙ୍ଗଲକୁ ଧାଇଁ ପଳେଇଗଲା। ତା ପରେ ଯାଇ ବୁଢାବୁଢି ହାଣ୍ଡି ଭିତରୁ ବାହାରିଲେ।





ଆମ ସମୟର ଓଡ଼ିଆ ଗଳ୍ପ ସାମ୍ରାଜ୍ୟକୁ ଯେଉଁ କେତେଜଣ ତରୁଣଙ୍କର ବିଶେଷ ଅବଦାନ ରହିଛି ସେମାନଙ୍କ ମଧ୍ୟରୁ ଅନନ୍ୟ ଏବଂ ଅନ୍ୟତମ କଥାକାର ରଂଜନ ପ୍ରଧାନ । ସାଧାରଣ ମଣିଷର ଅବଚେତନ ମନରେ ଲୁକ୍କାୟିତ ଆକାଂକ୍ଷା ଓ ଅନ୍ତର୍ଦ୍ୱନ୍ଦ୍ୱର ଏକ ସଫଳ ରୂପାୟନ ତାଙ୍କ ରଚନାର ମୁଖ୍ୟ ବିଭବ କହିଲେ ଅତ୍ୟୁକ୍ତି ହେବ ନାହିଁ । ନିଜର ଜୀବନଚର୍ଯ୍ୟା ପରିପ୍ରେକ୍ଷିରେ ଅଙ୍ଗେ ନିଭାଇଥିବା ଘଟଣା ଓ ଆଦିବାସୀ ଜନଜୀବନର ସାମାଜିକ ଚିତ୍ର କାନଭାସ୍ ଭାବେ କାର୍ଯକରିଛି ତାଙ୍କ ଗଳ୍ପରେ । ଏଯାବତ୍ ପ୍ରକାଶିତ ତାଙ୍କର ଗୋଟିଏ କବିତା ସଂକଳନ ଏବଂ ଦୁଇଟି ଗଳ୍ପ ସଂକଳନ ପାଠକ ମହଲରେ ବେଶ୍ ଆଦୃତି ଲାଭ କରିଛି । ସେହି ମର୍ମରେ ଏହି ପୁସ୍ତକଟି ଆଉ ପାଦେ ଆଗେଇ ଯିବାର ସ୍ପର୍ଦ୍ଧା ବହନ କରେ ।